# ମାଙ୍କଡ଼ କେମିତି ମଣିଷ ହେଲେ ?

• ବିନୟକୃଷ୍ଣ ପଟ୍ଟନାୟକ



ଖୁସିରେ ପଢ଼ିବା ଅଭିଯାନ
ଭାରତ ଜ୍ଞାନ ବିଜ୍ଞାନ ସମିତି

# ମାଙ୍କଡ଼ କେମିତି ମଣିଷ ହେଲେ ?


| | | |
|---|---|---|
| ପ୍ରସ୍ତୁତି | : | ବିନୟକୃଷ୍ଣ ପଟ୍ଟନାୟକ |
| ପ୍ରକାଶକ | : | **ଭାରତ ଜ୍ଞାନ ବିଜ୍ଞାନ ସମିତି,**<br>ସି-୨, ହାଉସିଂ ବୋର୍ଡ଼ କଲୋନୀ,<br>ବରମୁଣ୍ଡା, ଭୁବନେଶ୍ୱର-୭୫୧ ୦୦୩<br>ଫୋନ୍ : (୦୬୭୪) ୪୭୦୮୯୧ |
| ଅଙ୍ଗସଜ୍ଜା | : | ଓରିକନ୍ କମ୍ପ୍ୟୁଟରସ୍, ଭୁବନେଶ୍ୱର |
| ମୁଦ୍ରଣ | : | *ପଦ୍ମା କମର୍ସିଆଲ୍, ଭୁବନେଶ୍ୱର* |
| ମୂଲ୍ୟ | : | **ତିନି ଟଙ୍କା ମାତ୍ର** |
| ପ୍ରକାଶ କାଳ | : | ଜାନୁଆରୀ ପହିଲା ୧୯୯୭ |


ଏହି ବିଜ୍ଞାନଧର୍ମୀ ପୁସ୍ତିକାଟି ଓଡ଼ିଶାରେ **ଖୁସିରେ ପଢ଼ିବା ଅଭିଯାନ** (Jan Vachan Andolan) ପାଇଁ ପ୍ରସ୍ତୁତ କରାଯାଇଛି । ଗାଁ ଗହଳରେ ଲୋକଙ୍କର ପଠନ ରୁଚିକୁ ତେଜିବା ଓ ଏକ ପାଠାଗାର ଆନ୍ଦୋଳନକୁ ସକ୍ରିୟ କରିବା ପାଇଁ ଏହା ଏକ ଦେଶବ୍ୟାପୀ ଉଦ୍ୟମ ।


*• **How Apes became Homo sapiens** • **Author** : Binaya Krushna Pattanayak • **Publisher** : B.G.V.S, Orissa • **Price :** **Rs.3.00** • **Publication Period:** 1st Jan. 1997*



ଦିନେ ଆମେ ନନ୍ଦନକାନନ ବୁଲିବାକୁ ଯାଇଥିଲୁ । ଏହାର ଜଙ୍ଗଲିଆ ପରିବେଶ ଆମକୁ ଖୁବ୍ ଭଲ ଲାଗୁଥାଏ । କେଉଁଠି ରଙ୍ଗ ବେରଙ୍ଗ ଚଢ଼େଇଙ୍କ ଡ଼େଣାର ଫଡ଼ଫଡ଼ ଶବ୍ଦ ଓ କାକଳିରେ ଜାଗାଟି ବଡ଼ ମଧୁର ଓ ଜୀବନ୍ତ ଲାଗୁଥାଏ । ଆଉ କେଉଁଠି ପାଣି ଭିତରେ ବିରାଟକାୟ କୁମ୍ଭୀର ସବୁ ପାଟି ମେଲି ଚାହିଁଥାନ୍ତି । ସାପ ରାଇଜରେ ବିବିଧ ରକମର ବିଷାକ୍ତ ଓ ସାଧାରଣ ସାପ ସବୁ ଗୁଡ଼ାଇ ହୋଇ ଶୋଇଥାନ୍ତି । ମୟୂର ପୁଚ୍ଛ ଟେକି ନାଚୁଥାନ୍ତି । ଗୁମ୍ଫା ଭିତରୁ ଝାମ୍ପୁରା ଭାଲୁଟାଏ ମୁହଁକୁ ହଲାଇ ହଲାଇ ଦଉଡ଼ି ଆସୁଥାଏ । ଜାତିଜାତିକା ହରିଣ, ସମ୍ବର ଆଦି ଡ଼େଇଁ କୁଦି ଖେଳୁଥା'ନ୍ତି । ମୋଟା ଲୁହା ଛଡ଼ରେ ତିଆରି ବିରାଟ ଜନ୍ତା ଭିତରେ ବାଘ, ସିଂହକୁ ମାଂସ ଖାଇବାକୁ ଦିଆଯାଇଥାଏ । କି ଭୟଙ୍କର ସେହି ଦୃଶ୍ୟ ! ଏହି ଭୋକିଲା ଜୀବଗୁଡ଼ିକ କେତେ ଦୁର୍ଦ୍ଦାନ୍ତ ଓ ଭୟଙ୍କର ହୋଇପାରନ୍ତି, ଦେଖିଲେ ଛାତିଟା ଧଡ଼ଧଡ଼ ହେଉଥାଏ । ତାଙ୍କର ନଖ, ଦାନ୍ତ ଓ ମୁହଁକୁ ଚାହିଁ ହେଉ ନ ଥାଏ । ଏ ସବୁକୁ ଦେଖି ଆମ ମା'ଙ୍କର ମନ ବହୁତ ଖରାପ ହୋଇଯାଇଥାଏ । ଏକରେ, ଖୋଲା ଦୁନିଆଁର ଏହି ସୁନ୍ଦର ଜୀବଜନ୍ତୁଙ୍କୁ ଏପରି ଏକ ଶୃଙ୍ଖଳା ଜାଗାରେ ବନ୍ଦୀ କରି ରଖାଯାଇଛି । ଦ୍ୱିତୀୟରେ, ପେଟପୂରା ଖାଇବାକୁ ନ ପାଇ ଏମାନେ ବେଶ୍ ଭୋକିଲା, ରୋଗିଣା, ମାନ୍ଦା ଓ ଦୁଃଖୀ ଜଣାପଡୁଥିଲେ । ଏଥିପାଇଁ ଅଳପ କିଛି ଖାଇବାକୁ ପାଇଗଲେ ସେମାନେ ନିଜ ପାଉଣା ଟିକକ ପାଇଁ ନିଜ ନିଜ ଭିତରେ ଝୁଣାମରା ହେଉଥାନ୍ତି । ଏ ସବୁ କଥା ଶୁଣି ଆମକୁ ବି ଖରାପ ଲାଗୁଥାଏ । କିନ୍ତୁ ପଶୁପକ୍ଷୀଗୁଡ଼ିକର ମଜାଦାର ହାବଭାବ ଓ ରୂପ ଦେଖି ଆମେ ତାଙ୍କ ଦୁଃଖକୁ ଭୁଲି ଯାଉଥିଲୁ ।

ଏପରି ବୁଲୁ ବୁଲୁ ଆମେ ଅଜାଣତରେ ଏକ ନୂଆ ରାଇଜ ଭିତରକୁ ପଶି ଆସିଥିଲୁ । ଏ ଥିଲା ମାଙ୍କଡ଼ଙ୍କ ରାଇଜ । କେଉଁ ମାଙ୍କଡ଼ ଜାଲିର ଏ ପାଖରୁ ସେ ପାଖକୁ ଡ଼େଇଁ ପଡୁଥାଏ । କିଏ ଗୋଟିଏ ହାତରେ ଛାତର ବଳାଟିକୁ ଧରି ଦୋଳି ଖେଳୁଥାଏ । କିଏ ଆଉ ଏକ ମାଙ୍କଡ଼ର ଦେହରୁ ଉକୁଣୀ ବାଛି ଦେଉଥାଏ । କିଏ ତା ଛୁଆଟିକୁ ଦୁଧ ପିଆଇ କେତେ ଗେଲ କରୁଥାଏ । କିଏ ଗୋଡ଼ ହାତ ଟେକି ପଥର ଉପରେ ମଣିଷଟିଏ ପରି ଆରାମରେ ଶୋଇଥାଏ । ତାଙ୍କର ଏ ସବୁ ହାବଭାବ ଦେଖିଲେ ମନେ ହେଉଥିଲା ଯେପରି ଏମାନେ କେଉଁହି ବି ମଣିଷଠୁ ଭଣା ନୁହନ୍ତି । ଏମାନେ ଆମ ପରି ଭାଷାରେ କଥା କହି ପାରୁ ନ ଥିଲେ କି ଲେଖା ପଢ଼ା କରି ପାରୁ ନ ଥିଲେ । କିନ୍ତୁ ନିଜ ଭାଷାରେ ପରସ୍ପର ସହ କେତେ କ'ଣ ଭାବ ବାଣ୍ଟୁଥିଲେ ।

ଏମାନଙ୍କ କଉତୁକ ଦେଖି ଆମେ ହସି ହସି ଗଡ଼ି ଯାଉଥିଲୁ । ଆମେ ଧରିଥିବା ଚଣା, ବିସ୍କିଟ, କୋଳି, ଆଦିରୁ କିଛି କିଛି ପକାଇ ଦେଉଥିଲୁ । ସେମାନେ ଗୋଟାକ ପରେ ଗୋଟିଏ ଉଠାଇ ନେଇ ଖାଇ ଦେଉଥିଲେ । ଖାଇଦେଇ କିଏ ଘେରାଏ ଦଉଡ଼ି ଆସୁଥିଲା ତ କିଏ ମାଙ୍କଡ଼ଚିତ୍ ମାରି ବୁହେ ଗଡ଼ି ଯାଉଥିଲା । କିଏ ପୁଣି ଜାଲି ବାହାରକୁ ଆଙ୍ଗୁଠି ବାହାର କରି ମାଗିଲା ଆଖିରେ ଅନେଇ ରହୁଥିଲା ।

ସେମାନଙ୍କ ହାବଭାବ ଆମକୁ ବେଶ୍ ଉସୁକାଇ ଚାଲିଥାଏ । ମୁଁ ଭାବୁଥାଏ, କୁକୁର, ବିଲେଇ, କାଉ, ଗାଈ ଆଦିଙ୍କୁ ଖାଇବାକୁ ଦେଲେ ସେମାନେ ସିଧା ମୁହଁକୁ ବଢ଼ାଇ ଦିଅନ୍ତି । କିନ୍ତୁ ମାଙ୍କଡ଼ଗୁଡ଼ିକ ଠିକ୍ ଆମ ମଣିଷଙ୍କ ପରି ହାତରେ ଉଠାଇ ନିଅନ୍ତି । ଦେଖନ୍ତି । ଖାଦ୍ୟ ହୋଇଥିଲେ, ତାକୁ କାମୁଡ଼ି ନେଇ ଚୋବାଇ ଚୋବାଇ ଖାଇଦିଅନ୍ତି । ଗୋଟିଏ କାମ ଦେଖି ମୁଁ ତ ପୂରା ମାନିଗଲି । ମୋ ଭଉଣୀ ଗୋଲାପ ଚଣା ଦେଉ ଦେଉ ଗୋଟିଏ ଚଣା ଜାଲି ବାହାରେ ଗଡ଼ିଗଲା । କୁନି ମାଙ୍କଡ଼ଟିଏ ତାକୁ ପାଇବା ପାଇଁ ଜାଲି ଫାଙ୍କରେ ଆଙ୍ଗୁଠି ବଢ଼ାଇଲା । ଅନେକ ଚେଷ୍ଟା ପରେ ବି ସେ ତାହା ପାଇ ପାରିଲା ନାହିଁ । କିଛି ସମୟ ପରେ ତା' ମା'ଜାଲି ଭିତରୁ କେଉଁଠୁ ଛୋଟିଆ ବାଡ଼ି ଖଣ୍ଡେ ତା' ଆଡ଼କୁ ଫିଙ୍ଗିଦେଲା । କୁନି ମାଙ୍କଡ଼ ଏଇଟିକୁ ଉଠାଇନେଲା । ସେ ଏଥର ବେଶ୍ ବିଜ୍ଞାନୀ ମନେ ହେଲା । ବାଡ଼ି ଖଣ୍ଡିକୁ ସେ ଜାଲି ବାହାରକୁ ବଢ଼େଇ ଚଣାଟି ପାଖରେ ପହଞ୍ଚିବାକୁ ଚେଷ୍ଟା କଲା । କିଛି ଥର ପରେ ଚଣାଟି ଛିଟିକି ଯାଇ ଜାଲି ପାଖରେ ପଡ଼ିଲା । ଏଥର ସେ ଆରାମରେ ଚଣାଟିକୁ ଉଠାଇ ନେଇ ଚଲୁ କରିଦେଲା । ତା'ର ଏହି କଳା ଦେଖି ଆମେ ସମସ୍ତେ ତାଳି ମାରିଲୁ । ସେ ବି ହାତ ହଲାଇ ହଲାଇ ମା' ପାଖକୁ ଦଉଡ଼ିଗଲା ଓ କେତେ କସରତ ଦେଖାଇଲା ।

ଆମ ତାଳି ମାଡ଼ ଭିତରୁ ମା'ଙ୍କର କିଛି କଥା ଶୁଣାଗଲା । " ଏମାନେ ହେଲେ ଆମ କେକେଙ୍କ, କେକେଙ୍କ, କେକେଙ୍କ, କେକେଙ୍କ, କେକେ " । ଆମେ ସମସ୍ତେ ମା'ଙ୍କ

ମୁହଁକୁ ଚାହିଁଲୁ । ଭାବିଥିଲୁ ସେ ବୋଧେ କିଛି ମଜା କଥା କହୁଛନ୍ତି । କିନ୍ତୁ ସେ ମଜା କଲା ପରି କଣା ପଡୁ ନ ଥିଲେ । ସବୁଦିନ ପରି ହସିଲା ମୁହଁରେ ସେ ଏହା କହୁଥାନ୍ତି । ମୁଁ ଭାବି ଚାଲିଲି, " ଆମ ଜେଜେ ତ ବୁଢ଼ା ହୋଇଗଲେଣି । ଜେଜେଙ୍କ ଜେଜେ କିପରି ହୋଇଥିବେ ? ସେ ବି ତାଙ୍କ ପରି ଜଣେ ମୋଟା ସୋଟା ଲୋକ ହୋଇଥିବେ । ତାଙ୍କ ଜେଜେ ବି ସେପରି ହୋଇଥିବେ । ତାଙ୍କ ଜେଜେ ବି ହୁଏ ତ ସେମିତି ହୋଇଥିବେ । କିନ୍ତୁ ଏମିତିକା ମାଙ୍କଡ଼ ହେବେ କେମିତି ? ତା'ଥିଲେ ତ ତାଙ୍କର ଲମ୍ବା ଲାଙ୍ଗୁଡ଼ ଥାଆନ୍ତା ! ତାଙ୍କ ନାତିଙ୍କ ନାତିଙ୍କ ନାତି ହୋଇ ମୋର ବି ଲାଙ୍ଗୁଡ଼ଟିଏ ଝୁଲୁଥାନ୍ତା । ମୁଁ ତ ମଣିଷ । ମାଙ୍କଡ଼ କାହିଁକି ହେବି ଯେ !" ମା' ବୋଧେ କିଛି ମଜା କଥା କହି ହସାଇବେ ।

କିନ୍ତୁ ମା' ହସିଲେ ନାହିଁ କି ହସାଇଲେ ନାହିଁ । ଆମେ ସବୁ ତାଙ୍କ ମୁହଁକୁ ଟାଟକା ହୋଇ ଚାହିଁଥାଉ । ଥରେ ମାଙ୍କଡ଼ଙ୍କ ମୁହଁକୁ ତ ଥରେ ତାଙ୍କ ମୁହଁକୁ ଚାହୁଁଥାଉ । ମା' ଆମ ମନ କଥାକୁ ଠଉରାଇନେଲେ । ସେ କହିଲେ, " ଏ କଥା ଶୁଣିବାକୁ ଆଶ୍ଚର୍ଯ୍ୟ ଲାଗେ । ଏହାକୁ ବିଶ୍ୱାସ କରିହୁଏ ନାହିଁ । କିନ୍ତୁ ଏହି ମତ ପକ୍ଷରେ ବିଜ୍ଞାନର ଅନେକ ପ୍ରମାଣ ଓ ଯୁକ୍ତି ରହିଛି । "



ମାଙ୍କଡ଼ଠୁ ମଣିଷ ବନିବାର କାରଣଟି ଆମେ ଜାଣି ପାରିଲୁ ନାହିଁ । ସବୁଥର ଭଳି ଏଥର ବି ଆମର ସନ୍ଧାନୀ ଦଳଟି ମୁଣ୍ଡରେ କୁତୁକୁତୁ ଲାଗିଲା । ଆମେ ସଭିଏଁ ଭାବି ଚାଲିଲୁ ଏହା କିପରି ସମ୍ଭବ ହୋଇପାରେ ... ଆମେ ପଚାରିଲୁ, " ତା ହେଲେ ଆଜିର ମାଙ୍କଡ଼ମାନେ କାହିଁକି ମଣିଷ ହେଉନାହାନ୍ତି ? ମାଙ୍କଡ଼ଟିଏ ମଣିଷ ଛୁଆ ଜନ୍ମ କରିବାର ତ କେଉଁଠି ବି ଆମେ ଦେଖୁନାହୁଁ !" ମା' କହିଲେ," ସତ କଥା । ମାଙ୍କଡ଼ଟିଏ ସିଧା ମଣିଷ ଛୁଆ ଜନ୍ମ କରେ ନାହିଁ । ଆମେ ଏପରି ଘଟଣା କେବେ ଦେଖିନାହେଁ, କି ଦେଖିବାକୁ

ପାଇବା ନାହିଁ । ଆମେ ତ ବେଶୀରେ ୮୦ କି ୧୦୦ ବର୍ଷ ଜିଇଁଥାଉଁ । କିନ୍ତୁ ଏପରି ଘଟଣା ଘଟିବା ପାଇଁ ଲକ୍ଷ ଲକ୍ଷ, କୋଟି କୋଟି ବର୍ଷ ଲାଗିଯାଏ । ଆଜି ଆମେମାନେ କେହି ବି ଏହି ବଦଳର ଧାରାଟିକୁ ପୂରା ଦେଖିପାରିବା ନାହିଁ । କିନ୍ତୁ ଅନେକ ପ୍ରମାଣକୁ ଆଧାର କରି ବିଜ୍ଞାନୀ ମଣିଷ ଏହି ଅପୂର୍ବ ଦୃଶ୍ୟଟିକୁ ଠଉରାଇପାରିଛି । ''



'' ବିଜ୍ଞାନ ଆମକୁ ଏ ଦିଗରେ ବାଟ ବତାଇଛି । ତୁମେ ଯେପରି ମାଙ୍କଡ଼କୁ ଦେଖି ମଣିଷ କଥା ମନେ ପକାଉଥିଲ, ଆଦିମ ମଣିଷ ମଧ୍ୟ ମାଙ୍କଡ଼କୁ ଦେଖି ସେପରି ଭାବିଥିବ । ଆମ ସହିତ ତାଙ୍କର ସମ୍ପର୍କର ଖିଅକୁ ଖୋଜିଥିବ । ଗୋଟିଏ ପରେ ଗୋଟିଏ ହୋଇ ମଣିଷ ପ୍ରତି ପୀଢ଼ି ରେ ଏହିପରି ସନ୍ଧାନୀ ଧାରା ଜାରି ରହିଛି । ସାଧାରଣ ମନେ ହେଉଥିବା ଘଟଣାଗୁଡ଼ିକ ଦେଖି ସେ ଅନେକ ଅସାଧାରଣ କଥା ଚିନ୍ତା କରିଛି । ମଝିରେ ମଝିରେ ଘଟଣା ଚକ୍ରରେ ସେ ଅନେକ ପରୋକ୍ଷ ପ୍ରମାଣ ବି ପାଇପାରିଛି । ବେଳେବେଳେ ମାଟି ଖୋଳିବା ବେଳେ ବିଭିନ୍ନ ପ୍ରାଚୀନ ଜୀବଜନ୍ତୁଙ୍କ କଙ୍କାଳ ମିଳିଯାଏ । ଆଦିମ ମଣିଷର କଙ୍କାଳକୁ ଦେଖି ମଣିଷ ଆଶ୍ଚର୍ଯ୍ୟ ହୋଇଯାଏ । ''

'' ବିଭିନ୍ନ ସମୟରେ ପୃଥିବୀର ମାଟି ତଳୁ ଅନେକ ରକମର ମଣିଷଙ୍କ କଙ୍କାଳ ସବୁ ମିଳିଛି । ଏଗୁଡ଼ିକ ଭିତରୁ କେତେକଙ୍କର ମାଙ୍କଡ଼ ସହିତ ତ ଆଉ କେତେକଙ୍କର ମଣିଷ ସହ ମେଳ ରହିଛି । ଆଧୁନିକ ମଣିଷ ହାଡ଼ଗୁଡ଼ିକୁ ପରଖି କଳନା କରିଛି, ଏମାନେ କେତେ ବର୍ଷର ପୁରୁଣା ହେଇଥିବେ । ପ୍ରତିଥର ମିଳୁଥିବା ନୂଆ କଙ୍କାଳଗୁଡ଼ିକୁ ପରଖିବାରୁ ସେମାନଙ୍କ ଭିତରେ କିଛି ସମ୍ପର୍କ ଥିଲା ପରି ମନେ ହେଲା । ଜଣାପଡ଼ିଲା ଯେ ସମୟର କ୍ରମରେ ମଣିଷର ରୂପ ଯଥେଷ୍ଟ ବଦଳିଛି । ପ୍ରାଚୀନ ମଣିଷମାନେ ଆଜିର ମଣିଷଙ୍କଠାରୁ ବେଶି ଅଲଗା ଥିଲେ । ସେମାନଙ୍କର ବେଶୀ ମେଳ ଥିଲା ଜଙ୍ଗଲର ମାଙ୍କଡ଼ମାନଙ୍କ ସହ । ଧୀରେ ଧୀରେ ମାଙ୍କଡ଼ ଓ ଆଦିମ ମଣିଷ ଭିତରେ ଏକ ଯୁକ୍ତିଭିତ୍ତିକ ସେତୁ ଗଢ଼ା ହୋଇଯାଇପାରିଲା । ''

ବଣର ମାଙ୍କଡ଼ ଅବସ୍ଥାରୁ ବଦଳି ବଦଳି, ଆଜିର ମଣିଷ ରୂପରେ ପହଞ୍ଚିବାକୁ ଲାଗିଯାଇଛି ପ୍ରାୟ ୨୬ ଲକ୍ଷ ବର୍ଷ । ମଣିଷର ଆଖିରେ ଏହା ଏକ ଆଶାତୀତ ଲମ୍ବା ସମୟ । କିନ୍ତୁ ସମୟର ମାପକାଠିରେ ଏହା ଅତି ନଗଣ୍ୟ । ପୃଥିବୀ ଆଜିକୁ ପ୍ରାୟ ୪୮୦ କୋଟି ବର୍ଷ ତଳେ ଜନମ ହେଇଥିଲା ବୋଲି ଧରାଯାଏ । ତେଣୁ ଏହି ହିସାବରେ ମଣିଷର ଆବିର୍ଭାବ ଅନେକ ଡ଼େରିରେ । ଏହାକୁ ଆମେ କ୍ରମରେ ରଖିଲେ ଏକ ମଜାଦାର ସମ୍ପର୍କ ପାଇପାରିବା । ସହଜରେ ବୁଝିବା ପାଇଁ ଆମେ ପୃଥିବୀର ୪୮୦ କୋଟି ବର୍ଷକୁ ଆମର ଏକ ବର୍ଷ ବୋଲି ଧରିନେବା । ଏଥିରେ ବିଭିନ୍ନ ଘଟଣା ଏହି କ୍ରମରେ ରହିବ :

| କ୍ରମିକ ସଂଖ୍ୟା | ବିଭିନ୍ନ ଘଟଣା | ମୂଳ ସମୟରେ (କୋଟି ବର୍ଷପୂର୍ବେ) | ଆମର କାଳ୍ପନିକ ହିସାବରେ |
|---|---|---|---|
| ୧. | ପୃଥିବୀ ଜନମ ନେଲା | ୪୮୦ | ଜାନୁୟାରୀ ୧ |
| ୨. | ମାଟି ଓ ପଥର ତିଆରି ହେଲା | ୪୦୦ | ଫେବୃୟାରୀ ୧ |
| ୩. | ଜୀବନର ଆରମ୍ଭ ହେଲା | ୩୮୦ | ମାର୍ଚ୍ଚ ୧ |
| ୪. | କେତେକ ପ୍ରାଚୀନ ଜୀବାଶ୍ମ ମିଳୁଛି | ୩୩୦ | ଏପ୍ରିଲ ୧ |
| ୫. | ଆଲୋକ ସଂଶ୍ଳେଷଣ ଆରମ୍ଭ ହେଲା | ୨୬୦ | ଜୁନ୍ ମଝି |
| ୬. | ଏକକୋଷୀ ପ୍ରାଣୀ ଦେଖାଦେଲେ | ୧୪୦ | ସେପ୍ଟେମ୍ବର ମଝି |
| ୭. | ବହୁକୋଷୀ ପ୍ରାଣୀ ଦେଖାଦେଲେ | ୮୦ | ନଭେମ୍ବର ୧ |
| ୮. | ଅମେରୁଦଣ୍ଡୀ ପ୍ରାଣୀ ଦେଖାଦେଲେ | ୬୦ | ନଭେମ୍ବର ମଝି |
| ୯. | ସ୍ଥଳଭାଗରେ ଉଦ୍ଭିଦ ଜଗତର ଆରମ୍ଭ | ୪୦ | ଡ଼ିସେମ୍ବର ୧ |
| ୧୦. | ଡ଼ାଇନୋସର୍ ଓ ସ୍ତନ୍ୟପାୟୀଙ୍କ ଆରମ୍ଭ | ୨୫ | ଡ଼ିସେମ୍ବର ମଝି |
| ୧୧. | ବଣମଣିଷଙ୍କ ଆରମ୍ଭ | ୫ | ଡ଼ିସେମ୍ବର ୨୭ |
| ୧୨. | ଆଧୁନିକ ମଣିଷର ଆରମ୍ଭ | ୫ଲକ୍ଷ | ଡ଼ିସେମ୍ବର ୩୧ |

ମାଙ୍କଡ଼ ଅବସ୍ଥାରୁ ବଦଳି ବଦଳି ଆଜିର ରୂପ ପାଇବାକୁ ମଣିଷର ଏକ ମହାନ ଯାତ୍ରା ବୋଲି କହିଲେ ବି ଭୁଲ ହେବ ନାହିଁ । କେତେବେଳେ ବି ରାତିକ ଭିତରେ ସବୁ କିଛି ବଦଳି ଯାଏ ନାହିଁ । ପ୍ରତି ପୀଢ଼ିରେ ଜୀବଟିର ଅଳପ ଅଳପ ପରିବର୍ତ୍ତନ ହୁଏ । ଏହି ନୂଆ ଜୀବଟି ପରିବେଶ ସହ ଖାପ ଖୁଆଇ ଜିଇଁପାରିଲେ ତା'ର ପର ପୀଢ଼ିଟି ଆଗେଇବାର ବାଟ ଖୋଲିଯାଏ । ଏହିପରି ଲଗାତାର ବଦଳାରୁ ହିଁ ଆଧୁନିକ ମଣିଷ ପରି ଉନ୍ନତ ଜୀବ ସୃଷ୍ଟି ହୋଇପାରିଛି । ପ୍ରାୟ ୨୬ ଲକ୍ଷ ବର୍ଷର ଏହି ମହାନ ଯାତ୍ରା ଚାଲିଆସିଛି ଓ ଆହୁରି ଆଗକୁ ବି ଚାଲିଥିବ । ଏହି ଯାତ୍ରାର ସତ କାହାଣୀଟି ଯଥେଷ୍ଟ ମଜାଦାର ।

ମଣିଷର ଇତିହାସ କହେ ଯେ ଆଦିମ କାଳରେ ସ୍ଥଳଭାଗର ଚାରିଆଡ଼େ ବଣ

ଜଙ୍ଗଲମୟ ଥିଲା । ଏଥିରେ ଅନେକ ରକମର ହିଂସ୍ର ସ୍ତନ୍ୟପାୟୀ ଜୀବ ରହୁଥିଲେ । ଜଳଭାଗରେ ବିଭିନ୍ନ ଜଳଚର ପ୍ରାଣୀ ଓ ଆକାଶରେ ଅନେକ ରକମର ଚଢ଼େଇ ରହୁଥିଲେ । ଜୀବଜଗତର କ୍ରମ ବିକାଶ ଧାରାରେ ଶେଷ ଆଡ଼କୁ ସୃଷ୍ଟି ହୋଇଥିଲେ ମାଙ୍କଡ଼ ଜାତିର ବିଭିନ୍ନ ଜୀବ । ଏମାନେ ଅନ୍ୟ ପଶୁପକ୍ଷୀଙ୍କଠାରୁ ଅଧିକ ଚାଲାକ ଓ ଉନ୍ନତ ଥିଲେ । ଏମାନେ ମୁଖ୍ୟତଃ ବିଭିନ୍ନ ଗଛର ଫଳ, ଫୁଲ ଆଦି ଖାଉଥିଲେ । ଗଛରୁ ଗଛ ଡେ଼ଇଁ ସେମାନେ ଖୁସିରେ ଜୀବନ ବିତାଉଥିଲେ । ଗଛ ଉପରେ ହିଁ ଏମାନଙ୍କର ଜୀବନ କଟୁଥିଲା । ତଳେ ବିଭିନ୍ନ ଶିକାରୀ ଜନ୍ତୁଙ୍କ ଭୟ ବି ଥିଲା । ଉପରେ ତାଙ୍କ ପାଇଁ ଯଥେଷ୍ଟ ଖାଦ୍ୟର ସୁବିଧା ଥିଲା । ଏହା ଥିଲା ଆଜିଠୁ ୩୦ରୁ ୫୦ ଲକ୍ଷ ବର୍ଷ ତଳର କଥା ।

କ୍ରମେ ସେମାନଙ୍କ ସଂଖ୍ୟା ବଢ଼ିଚାଲିଲା । ସମସ୍ତେ ମନ ମୁତାବକ ଖାଦ୍ୟ ଖାଇବାକୁ ପାଇଲେ ନାହିଁ । ମଝିରେ ମଝିରେ ତାଙ୍କୁ ଏହାର ବିକଳ୍ପ ଖୋଜିବାକୁ ପଡ଼ିଲା । ଗଛତଳେ ବିଭିନ୍ନ ବୁଦା ଆଦିରେ ରଙ୍ଗ ବେରଙ୍ଗ କୋଳି ପାଚୁଥିଲା । ତଳେ ହିଂସ୍ର ଜୀବଜନ୍ତୁ ନ ଥିଲା ବେଳେ କେହି କେହି ତଳକୁ ଓହ୍ଲାଇ ଆସି କିଛି ଖାଦ୍ୟ ତୋଳି ନେଉଥିଲେ । କିନ୍ତୁ ସେମାନଙ୍କ ସଂଖ୍ୟା ବଢ଼ିବା ସାଙ୍ଗକୁ ଖାଦ୍ୟର ଆବଶ୍ୟକତା ଉତ୍କଟ ହୋଇପଡ଼ିଲା । କିଛି ମାଙ୍କଡ଼ ବାଧ୍ୟ ହୋଇ ଗଛ ତଳକୁ ଓହ୍ଲାଇ ଆସିଲେ । ତଳେ ବିଭିନ୍ନ ଗଛର ଫଳ, ଫୁଲ, କୋଳି ଆଦି ଖାଇ ପେଟ ଭରିଲେ । ଗଛ ଉପରେ ତାଙ୍କ ପାଇଁ ଆଉ ଜାଗା ନ ଥିଲା ।

ସେମାନେ ଭୂଇଁ ଉପରେ ଏଣେତେଣେ ଖାଦ୍ୟ ଓ ସୁରକ୍ଷା ଖୋଜି ବୁଲିଲେ । ଆଗ ପରିକା ତାଙ୍କୁ ଆଉ ଡ଼ାଳରୁ ଡ଼ାଳକୁ ଡେ଼ଇଁବାକୁ ପଡ଼ିଲା ନାହିଁ କିମ୍ବା ଗୋଟିଏ ଡ଼ାଳକୁ ହାତରେ ବା ଲାଞ୍ଜରେ ଜାବୁଡ଼ି ଧରି ଫଳଟିଏ ପାଇଁ ଆଉ ଏକ ଡ଼ାଳକୁ ଓହଳିବାକୁ ପଡ଼ିଲା ନାହିଁ । ସେମାନେ ଭୂଇଁ ଉପରେ ଅନ୍ୟ ପଶୁଙ୍କ ପରି ବି ଚାଲୁ ନ ଥିଲେ । ସେମାନଙ୍କ ପଛ ଗୋଡ଼ ଦୁଇଟି ଆଗ ଗୋଡ଼ ଅପେକ୍ଷା ବଳୁଆ ଓ ଲମ୍ବା ଥିଲା । ସେମାନେ ଦୁଇ ଗୋଡ଼ରେ ଆରାମରେ ଠିଆ ହୋଇଯାଇ ବିଭିନ୍ନ ବୁଦାରୁ ଫଳ, କୋଳି ତୋଳି ପାରୁଥିଲେ ।

ଅନ୍ୟମାନଙ୍କ ଅପେକ୍ଷା ଏହା ତାଙ୍କୁ ଅଧିକ ସାହାଯ୍ୟ କଲା । ସେମାନେ ନଇଁ ନଇଁ ପଛ ଦୁଇ ଗୋଡ଼ରେ ଚାଲିପାରିଲେ । ଏହି ଧାରାରେ ଆଗ ଗୋଡ଼ ଦୁଇଟି ଚାଲିବା କାମରୁ ମୁକ୍ତ ହୋଇ ଯାଇପାରିଲା । ଏହା ଅନ୍ୟ କାମରେ ଲାଗିପାରିଲା । ଏହା ମାଙ୍କଡ଼ଙ୍କର ଏକ ବିଚିତ୍ର ଅବସ୍ଥା ଥିଲା । ମାଙ୍କଡ଼ ରୂପରେ ସେମାନେ ଅଧା ନଇଁ ନଇଁ ଚାଲୁଥିଲେ ।



(ପ୍ଲିଓପିଥେକସ୍)

ଅବଶ୍ୟ ଗୋଟିଏ କଥା ମନେ ରଖିବା, ସବୁ ମାଙ୍କଡ଼ ଏପରି ଚାଲୁ ନ ଥିଲେ । ମାଙ୍କଡ଼ଙ୍କର ବିବିଧ ଶ୍ରେଣୀ ଭିତରୁ କିଛି ମାଙ୍କଡ଼ଙ୍କୁ ହିଁ ଏପରି ଅବସ୍ଥା ଦେଇ ଯିବାକୁ ହୋଇଥିବ । ଏହା କୌଣସି ମନଗଢ଼ା କାହାଣୀ ନୁହେଁ । ଏପରି ଅବସ୍ଥାର ମାଙ୍କଡ଼ଙ୍କୁ ଆମେ " ଆଦିମ ବଣୁଆ ମଣିଷ " ବୋଲି କହିପାରିବା । ଏହି ଶ୍ରେଣୀର ମାଙ୍କଡ଼ଙ୍କର କଙ୍କାଳ ମାଟି ତଳୁ ମିଳିସାରିଛି । ଏହା ହିଁ ଏହି ଉପାଖ୍ୟାନର ମୂକ ସାକ୍ଷୀ । ଏହି କଙ୍କାଳଗୁଡ଼ିକୁ ଯୋଡ଼ି ବିଜ୍ଞାନୀ ତା'ର ଆଶା ମୁତାବକ ଜୀବଟିକୁ ଆଙ୍କିଛି । ଏଠାରେ ଛବିଟିରୁ ଆମେ ଜୀବଟିର ରୂପ ଓ ଆଚରଣକୁ ଠଉରାଇପାରିବା । ଏହି ଆଦିମ ବଣୁଆ ମଣିଷଙ୍କୁ **ପ୍ଲିଓପିଥେକସ୍** କୁହାଯାଏ ।

ଏମାନେ ପ୍ରାୟ ଅଢ଼େଇ କୋଟି ବର୍ଷ ତଳେ ପୃଥିବୀ ଉପରେ ଦେଖା ଦେଇଥିଲେ । ଏମାନେ ଗଛ ଉପରର ମାଙ୍କଡ଼ଙ୍କ ଠାରୁ କିଛିଟା ଅଲଗା ଥିଲେ । ଏମାନଙ୍କର ରୂପ ଗଛର ସେହି ମାଙ୍କଡ଼ଙ୍କ ପରି ଥିଲା । କିନ୍ତୁ ଆଚରଣରେ ଫରକ ରହିଥିଲା । ପଛ ଦୁଇଗୋଡ଼ରେ ଚାଲିବା ଫଳରେ ନାନା କାମ କରିବା ପାଇଁ ତାଙ୍କୁ ଦୁଇଟା ହାତ ମିଳିଗଲା । ଏହା ତାଙ୍କ କାମିକା ଦକ୍ଷତାକୁ ବେଶ୍ ବଢ଼ାଇ ଦେଇଥିଲା । କିନ୍ତୁ ବଂଶ ବଂଶ ଧରି ଏପରି ଚାଲିଚଳଣ ଯୋଗୁଁ ସେମାନେ ଆଗପରି ଗଛରେ ଚଳିବାର ଦକ୍ଷତା ହରାଇ ବସିଲେ । ଗୋଟିଏ ପଟେ ଗଛ ଉପରର ଜୀବନଧାରା ବଦଳି ମାଟି ଉପରେ ଚଳିବାର ଏକ ନୂଆ ବାଟ ଖୋଲିଗଲା ।

ଲକ୍ଷ ଲକ୍ଷ ବର୍ଷର ଏହି ରୀତିରେ ଜୀବନ ବିତାଇବାରୁ ନୂଆ ପୀଢ଼ିର ଛୁଆଗୁଡ଼ିକ ପୂରାପୂରି ପାଦଚଲା ମାଙ୍କଡ଼ ବନିଗଲେ । ଏମାନଙ୍କୁ ଆମେ ବଣମଣିଷ ବୋଲି କହିପାରିବା । ଆମେ ଚିଡ଼ିଆଖାନାରେ ଗିବନ୍ ଦେଖିଥିବା । ପ୍ଲିଓପିଥେକସ୍‌ମାନେ 'ଗିବନ୍' ପରିକା ଜୀବ ଥିଲେ ବୋଲି କୁହାଯାଇପାରେ ।



(ପ୍ରୋକନ୍‌ସଲ୍)

୧୯୩୦ ଦଶକରେ ଲିକି ନାମକ ଜଣେ ଜୀବାଣୁ ବିଜ୍ଞାନୀ ଭିକ୍ଟୋରିଆ ହ୍ରଦର ଏକ ଦ୍ୱୀପପୁଞ୍ଜରେ ଏକ ନୂଆ କଙ୍କାଳ ଆବିଷ୍କାର କଲେ । ଏହାର ଆକାର ଆଦିମ ବଣମଣିଷ ପରି ଥିଲା । ଲିକି ଏହାର ନାମ ରଖିଲେ **ପ୍ରୋକନ୍‌ସଲ୍** । ଏମାନେ ପ୍ରାୟ ୨ କୋଟିରୁ ବେଶୀ ବର୍ଷ ତଳେ ପୃଥିବୀରେ ଦେଖା ଦେଇଥିଲେ । ଏମାନେ ଉଭୟ ମାଙ୍କଡ଼ ଓ ବଣମଣିଷଙ୍କର ଏକ ମିଶ୍ରିତ

ରୂପ ଥିଲେ । ଏମାନଙ୍କର ହାତ, ଖପୁରୀ ଓ ମସ୍ତିଷ୍କ ମାଙ୍କଡ଼ ପରି ଏବଂ ମୁହଁ, ମାଢ଼ି ଓ ଦାନ୍ତ ବଣମଣିଷ ପରି ଥିଲା । ମାଙ୍କଡ଼ ଅପେକ୍ଷା ଏମାନଙ୍କର ମଣିଷ ସହ ବେଶୀ ମେଳ ଥିଲା । ମାଙ୍କଡ଼ (ପ୍ରାକ୍ ବଣମଣିଷ) ଙ୍କର ଦାନ୍ତ ସଂଖ୍ୟା ୩୪ ଥିଲା ବେଳେ ବଣ ମଣିଷ, ମଣିଷ ଆଦିଙ୍କ ଦାନ୍ତର ସଂଖ୍ୟା ୩୨ । ପ୍ରୋକନ୍‌ସଲ୍‌ଙ୍କର ୩୨ଟି ଦାନ୍ତ ଥିଲା । ଏହା ଥିଲା ତାଙ୍କର ମଣିଷ ବନିବା ଯାତ୍ରାର ଏକ ସିଧା ପ୍ରମାଣ ।

ଏହି ପ୍ରୋକନ୍‌ସଲ୍‌ମାନେ ଥିଲେ ପ୍ରାଥମିକ ସ୍ତରର ବଣ ମଣିଷ । ଏମାନେ ପ୍ରଥମେ ଆଫ୍ରିକାରେ ଦେଖା ଦେଇଥିବାର ଆଶା କରାଯାଏ । ଏମାନଙ୍କ ପାଇଁ ସେତେବେଳେ ଭୂମି ଉପରେ ଖାଦ୍ୟ ଯଥେଷ୍ଟ ଥିଲା । ଏମାନେ ହିଂସ୍ର ବଣୁଆ ଜନ୍ତୁଙ୍କର ମୁକାବିଲା ବି କରି ପାରୁଥିଲେ । ଏପରି ସୁରକ୍ଷିତ ପରିବେଶରେ ଏମାନଙ୍କ ସଂଖ୍ୟା ଦ୍ରୁତ ବେଗରେ ବଢ଼ି ଚାଲିଲା । ଏମାନଙ୍କ ବଂଶଧରମାନେ ମଧ୍ୟ ସୁବିଧାରେ ଚଳିପାରିଲେ । ଏମାନେ କ୍ରମେ ଆଫ୍ରିକାରୁ ୟୁରୋପ ଓ ଏସିଆର ବିସ୍ତୀର୍ଣ୍ଣ ଅଞ୍ଚଳକୁ ଖେଳାଇ ହୋଇଗଲେ । ପ୍ଲିଓପିଥେକସ୍‌ଙ୍କ ଅପେକ୍ଷା ଏମାନଙ୍କର ଶରୀରରେ ଅଧିକ ଉନ୍ନତି ହୋଇଥିଲା । ମସ୍ତିଷ୍କ ସାଙ୍ଗକୁ ହାତ ଅଧିକା କାମିକା ହୋଇଥିଲା । ଏମାନେ ଅପେକ୍ଷାକୃତ ଅଧିକ ସଳଖ ଭାବରେ ଠିଆ ହୋଇ ପାରୁଥିଲେ ।


(ଡ୍ରାୟୋପିଥେକସ)

ପରେ ପରେ ଆଉ କିଛି ହାଡ଼ ୟୁରୋପ, ଭାରତ, ଚୀନ୍ ଓ ଆଫ୍ରିକା ଦେଶରେ ବହୁଳ ସଂଖ୍ୟାରେ ମିଳିଲା । କେଉଁ ଜାଗାରେ ବି ଜୀବଟିର ପୂର୍ଣ୍ଣାଙ୍ଗ କଙ୍କାଳ ଏ ଯାଏଁ ମିଳିନାହିଁ । କିନ୍ତୁ ମିଳିଥିବା ମାଢ଼ି, ଦାନ୍ତ ଖଣ୍ଡରୁ ବି ସେମାନଙ୍କ ଦେହ ଗଠନ ଓ ଆଚରଣ ବିଷୟରେ ଅନେକ ତଥ୍ୟ ଠଉରାଯାଇପାରୁଛି । ଏମାନେ ବି ପ୍ରୋକନ୍‌ସଲ୍ ଜାତିର ବୋଲି ଧରାଯାଇଛି । ଏହି ଶ୍ରେଣୀଟିର ନାଁ ରଖାଯାଇଛି **ଡ୍ରାୟୋପିଥେକସ୍ ବା ଶିବାପିଥେକସ୍ ।**

ପ୍ରତି ଦଫାରେ ବଣମଣିଷଙ୍କର ଦେହ ଗଠନରେ ଫରକ ଦେଖାଦେଉଥିଲା । କ୍ରମଶଃ ଏମାନେ ଅଧିକରୁ ଅଧିକ ସିଧା ଚାଲିଲା ପରି ଜଣାପଡୁଥିଲେ । ମୁହଁର ଆକାର ବି ବଦଳୁଥିଲା । କପାଳ ବେଳକୁ ବେଳ ଅଧିକା ଚଉଡ଼ା ଜଣାପଡୁଥିଲା । ଖପୁରୀ ଭିତରେ ମସ୍ତିଷ୍କର ଆକାର ବି କିଞ୍ଚିତ ବଢ଼ିଚାଲିଥିଲା । କିନ୍ତୁ ଏସବୁ ପରିବର୍ତ୍ତନ ଲକ୍ଷ ଲକ୍ଷ ବର୍ଷରେ ହିଁ ବାରି ହେଉଥିଲା । ଏହି କ୍ରମ ବିବର୍ତ୍ତନ ଧାରାରେ ପରବର୍ତ୍ତୀ ନୂଆ-ସୃଷ୍ଟି ଥିଲେ .......



(ରାମାପିଥେକସ୍)

ରାମାପିଥେକସ୍ । ଏମାନଙ୍କୁ ପରବର୍ତ୍ତୀ ଜାତିର ବଣ ମଣିଷ ଓ ମଣିଷଙ୍କ ମୂଳ ପିଣ୍ଡ ବୋଲି କୁହାଯାଇଥାଏ । ଏମାନେ ଉଚତାରେ ବେଶୀ ନ ଥିଲେ । ମାତ୍ର ତିନିରୁ ଚାରି ଫୁଟ (୧ ମିଟରରୁ ଦେଢ଼ ମିଟର) ଉଚ ହେଉଥିଲେ । ଏମାନେ ୪୦ରୁ ୮୦ ଲକ୍ଷ ବର୍ଷ ଧରି ଏସିଆ, ଆଫ୍ରିକା ଓ ୟୁରୋପରେ ରହିଥିଲେ । ଏମାନଙ୍କ ଜୀବାଶ୍ମଗୁଡ଼ିକ କେଉଁଠାରେ ବି ପୂର୍ଣ୍ଣାଙ୍ଗ ମିଳିନାହିଁ । କେତେକଙ୍କ ଜୀବାଶ୍ମ ହିମାଳୟ ପାଖ ସିବାଲିକ୍ ପାହାଡ଼ିଆ ଇଲାକାରୁ ମିଳିଛି । ଏମାନଙ୍କର ଦାନ୍ତ, ଉପର ଓ ତଳ ମାଢ଼ି ଆଦିରେ ଆଧୁନିକ ମଣିଷ ସହ ଅନେକ ମେଳ ରହିଛି । ରାମାପିଥେକସ୍ ନାଁଟିରେ ଭାରତୀୟ 'ରାମ' ଶବ୍ଦଟି ଯୋଡ଼ା ଥିଲା ପରି ମନେ ହୁଏ । ହିମାଳୟ ଅଞ୍ଚଳରେ ଏହାର ଜୀବାଶ୍ମ ମିଳିଥିବାରୁ ଏହାକୁ ଏପରି ନାଁ ଦିଆଯାଇ ଥାଇ ପାରେ । ଏମାନେ ଆଜିକୁ ପ୍ରାୟ କୋଟିଏ ବର୍ଷ ତଳେ ଦେଖା ଦେଇ ଥିଲେ । ଏମାନେ ବି ଅଳ୍ପ ବଙ୍କେଇ ଚାଲୁଥିଲେ ।

୧୯୨୫ ମସିହାରେ ଦକ୍ଷିଣ ଆଫ୍ରିକାର ଜୋହାନେସ୍‌ବର୍ଗ ଠାରେ ରେମଣ୍ଡ୍ ଡ଼ାର୍ଟ୍ ନାମକ ଜଣେ ଜୀବ ବିଜ୍ଞାନୀ ଏକ ନୂଆ ଖପୁରୀ ବିଷୟରେ ସୂଚନା ଦେଲେ । ଏହା ଏକ ପାଞ୍ଚ, ଛଅ ବର୍ଷର ଛୁଆର ଖପୁରୀ ଥିଲା । ଏପରି ଖପୁରୀ ଆଗରୁ କେବେ ଦେଖିବାକୁ ମିଳି ନଥିଲା । ଡ଼ାର୍ଟ୍ ଏହାର ନାଁ ରଖିଲେ **ଅଷ୍ଟ୍ରାଲୋପିଥେକସ୍ ଆଫ୍ରିକାନସ୍ ।**

ପରେ ପରେ ଦକ୍ଷିଣ ଆଫ୍ରିକାରେ ଅଧିକ ସଂଖ୍ୟାରେ ଏପରି ଖପୁରୀ, ମାଢ଼ି ଆଦି ମିଳିଥିଲା । ଏଗୁଡ଼ିକର ଖପୁରୀ ବଣ ମଣିଷ ଓ ମଣିଷର ମଝି ଅବସ୍ଥାର ଥିଲା । ଏହା ଆଜିର ସିମ୍ପାଞ୍ଜିଙ୍କ ମୁଣ୍ଡ ଆକାରର ଥିଲା ।



(ଅଷ୍ଟ୍ରାଲୋପିଥେକସ୍ ଆଫ୍ରିକାନସ୍ )

ଏଥିରେ ଅଧା କିଲୋରୁ ଅଳ୍ପ କମ୍ ଆୟତନର ଏକ **ମସ୍ତିଷ** ଥିବାର ଆଶା କରାଯାଏ । ଏହା ଆଜିର ମଣିଷର ମସ୍ତିଷ ଖୋଳଠାରୁ ଆକାରରେ ବେଶ୍ ଛୋଟ । କିନ୍ତୁ ସେମାନଙ୍କର ଦାନ୍ତ ଆମଠାରୁ ବେଶ୍ ବଡ଼ ଥିଲା । ଏହି ଖପୁରୀ ଗୁଡ଼ିକ ୧୫ରୁ ୩୦ ଲକ୍ଷ ବର୍ଷ ପୁରୁଣା ବୋଲି କଳନା କରାଯାଇଥିଲା ।


(ଅଷ୍ଟ୍ରାଲୋପିଥେକସ୍ ଆଫାରେନ୍‌ସିସ୍ )

୧୯୭୪ରେ ଡ଼ୋନାଲଡ୍ ଜୋହାନ୍‌ସନ୍ ଓ ତାଙ୍କ ସାଥିମାନେ ଇଥିଓପିଆରେ ଏକ କୋଡ଼ିଏ ବର୍ଷ ବୟସର ମାଇ ଅଷ୍ଟ୍ରାଲୋପିଥେକସ୍‌ର ଜୀବାଶ୍ମ ପାଇଲେ । ଏହା ଥିଲା ପ୍ରାୟ ୩୮ ଲକ୍ଷ ବର୍ଷ ପୁରୁଣା । ଏହି ଜୀବାଶ୍ମଟିରେ ଦେହର ଅଧିକାଂଶ ଭାଗ ସାଇତା ଥିଲା । ଜୀବାଶ୍ମଟିକୁ ସେମାନେ ନାଁ ଦେଲେ 'ଲୁସି' । ଏହା ସିଧା ଠିଆ ହୋଇପାରୁଥିବାର ଜଣାପଡ଼ିଲା । ଏହା ପ୍ରାୟ ୧ ମିଟର ଉଚ୍ଚ ଥିଲା । ଏହାର ଦାନ୍ତ ଅନୁସାରେ ଏହାର ବିଜ୍ଞାନ ନାଁ ରହିଲା **ଅଷ୍ଟ୍ରାଲୋପିଥେକସ୍ ଆଫାରେନ୍‌ସିସ୍** ।

ଅ. ଆଫ୍ରିକାନସ୍ ଓ ପରବର୍ତ୍ତୀ ଅନ୍ୟ ବଣମଣିଷଗୁଡ଼ିକ ଏହାର ବଂଶଧର ଥିଲେ । ଏହା ଥିଲା ରାମାପିଥେକସ୍‌ର ପରବର୍ତ୍ତୀ ପୀଢ଼ି । କିନ୍ତୁ ଏମାନେ ରାମାପିଥେକସ୍‌ର ପ୍ରାୟ ୬୨ ଲକ୍ଷ ବର୍ଷ ପରେ ଦେଖା ଦେଇଥିଲେ । ଅତଏବ, ଆମେ କହିପାରିବା ଯେ, ଆମ ମଣିଷ ସଭ୍ୟତା ଏହା ଠାରୁ ହିଁ ଆରମ୍ଭ ହେଲା-ଆଜିକୁ ମାତ୍ର ୩୮ ଲକ୍ଷ ବର୍ଷ ତଳେ ।ଆଫ୍ରିକାର ଅନ୍ୟ ଜାଗାରୁ ଆହୁରି ଅନେକ ବଣ ମଣିଷ ଜୀବାଶ୍ମ ମିଳିଛି । କେତେକ ଜୀବାଶ୍ମରେ ଆଫ୍ରିକାନସ୍ ଠାରୁ ଯଥେଷ୍ଟ ବଡ଼ ଓ ଶକ୍ତ କଳ ଦାନ୍ତ ଦେଖିବାକୁ ମିଳୁଛି । ଏମାନଙ୍କ ମୁହଁ ଓ ଖାଦ୍ୟ ଚୋବାଇବା ମାଂସପେଶୀଗୁଡ଼ିକ ଯଥେଷ୍ଟ ଶକ୍ତ । ଏହି ଗଠନ ଅନୁସାରେ ଏମାନଙ୍କୁ ଏକ ଅଲଗା ଶ୍ରେଣୀରେ ରଖାଯାଇଛି । ଏମାନଙ୍କ ନାଁ **ଅଷ୍ଟ୍ରାଲୋପିଥେକସ୍ ରୋବଷ୍ଟସ୍** । ଏମାନେ ମୂଳତଃ ଆଫ୍ରିକାରେ ହିଁ ବାସ କରୁଥିଲେ । ଆଜିକୁ ପ୍ରାୟ ୧୭ ଲକ୍ଷ ବର୍ଷ ତଳେ ଏମାନେ ଦେଖା ଦେଇଥିଲେ ।

ପୂର୍ବ ଆଫ୍ରିକାରେ ମଧ୍ୟ ଏହି ଶକ୍ତ ଆଫ୍ରିକାନ୍ ବଣମଣିଷଙ୍କର କେତେକ ଜୀବାଶ୍ମ ମିଳିଛି । ଆ. ରୋବଷ୍ଟସ୍‌ଙ୍କ ଠାରୁ ଏମାନଙ୍କର ମୁହଁ, ଦାନ୍ତ ଓ ମାଢ଼ି ଅଧିକ ବଡ଼ ଓ ଶକ୍ତ । କିନ୍ତୁ ଏମାନଙ୍କର ମସ୍ତିଷର ଆକାର ଆ. ରୋବଷ୍ଟସ୍‌ଙ୍କ ଆକାର ସହ ସମାନ ଥିଲା ।

ଏମାନେ ପ୍ରାୟ ୨୦-୨୫ ଲକ୍ଷ ବର୍ଷ ତଳେ ବାସ କରୁଥିଲେ । ଏମାନେ ଆ.ରୋବଷ୍ଟସ୍‌ଙ୍କ ଠାରୁ ଅଧିକ ବଳିଷ୍ଠ ଜଣାପଡୁଛନ୍ତି । କିନ୍ତୁ ଏମାନଙ୍କ ମସ୍ତିଷ ଅପେକ୍ଷାକୃତ କମ୍‌ଜୋର ଥିବାରୁ ଏମାନଙ୍କୁ ଏକ ସ୍ୱତନ୍ତ୍ର ଶ୍ରେଣୀରେ ରଖାଯାଇଛି । ଏହାର ନାଁ **ଅଷ୍ଟ୍ରାଲୋପିଥେକସ୍ ବୋଇସେଇ** । କିନ୍ତୁ ଏମାନେ କ୍ରମେ ଲୋପ ପାଇ ଯାଉଥିଲେ ।



(ଅଷ୍ଟ୍ରାଲୋପିଥେକସ୍ ରୋବଷ୍ଟସ୍ )



(ଅଷ୍ଟ୍ରାଲୋପିଥେକସ୍ ବୋଇସେଇ)

ଅଷ୍ଟ୍ରାଲୋପିଥେକସ୍‌ମାନେ ପ୍ରାୟ ୩୮ ଲକ୍ଷ ବର୍ଷ ତଳେ ବାସ କରୁଥିଲେ । ସେମାନଙ୍କ ବଂଶଧରମାନେ ଏବେ ବି ଆଫ୍ରିକାରେ ବାସ କରୁଛନ୍ତି । ସେମାନଙ୍କ ଭିତରୁ ମୂଳ ଚାରି ଶ୍ରେଣୀଙ୍କ ବିଷୟରେ ଆମେ ଆଲୋଚନା କରିସାରିଛେ । ସେମାନେ ସମସ୍ତେ ପଛ ଦୁଇ ଗୋଡ଼ରେ ଠିଆ ହେଉଥିଲେ ଓ ଧାଇଁ ପାରୁଥିଲେ । ଆଜିର ବଣ ମଣିଷ ସହ ତାଙ୍କ ମସ୍ତିଷର ଆକାର ଏକା ଥିଲା ।



ଅ. ଆଫାରେନ୍‌ସିସ୍ ଅ. ରୋବଷ୍ଟସ୍ ଅଫ୍ରିକାନସ୍ ଆଧୁନିକ ମଣିଷ

(ଅଷ୍ଟ୍ରାଲୋପିଥେକସ୍‌ଙ୍କର ଖପୁରୀର ଆକାର)

ସେମାନଙ୍କ ମାଢ଼ି ବଡ଼, ଶକ୍ତ ଓ ବାହାରକୁ ଫୁଲି ରହିଥିଲା । କଳ ଦାନ୍ତଗୁଡ଼ିକ ବେଶ୍ ଶକ୍ତ ଓ ବଡ଼ ଥିଲା । ଛାମୁ ଦାନ୍ତଗୁଡ଼ିକ ଅପେକ୍ଷାକୃତ ଛୋଟ ଥିଲା । କିନ୍ତୁ ଶ୍ୱାନ ଦାନ୍ତଗୁଡ଼ିକ ଆଜିର ବଣମଣିଷଙ୍କ ପରି ମୁନିଆ ନଥିଲା । ଏଗୁଡ଼ିକ ବାହାରକୁ ବାହାରି ନଥିଲା । କିନ୍ତୁ ଆମ ଶ୍ୱାନ ଦାନ୍ତ ଠାରୁ ଆକାରରେ ବଡ଼ ଥିଲା । ଏମାନଙ୍କ ମୁଣ୍ଡ ଭିତରର ଗଠନରୁ ଜଣାଯାଉଛି, ଏମାନେ ସମସ୍ତେ ଦି'ଗୋଡ଼ିଆ ଥିଲେ ଓ ଅଳ୍ପ ବଙ୍କେଇ ଚାଲୁଥିଲେ । ଅଣ୍ଟାହାଡ଼ କହୁଛି, ଏମାନେ ବଣମଣିଷ ଅପେକ୍ଷା ବେଶୀ ମଣିଷ ପରିକା ଥିଲେ । ବଣମଣିଷଙ୍କର ଅଣ୍ଟା ହାଡ଼ ସରୁଆ ଓ ଲମ୍ୱା; କିନ୍ତୁ ମଣିଷଙ୍କ କ୍ଷେତ୍ରରେ ଏହା ଚଉଡ଼ା ଥାଏ । ଜଣାଯାଉଛି ଯେ, ସେମାନେ ପ୍ରାୟ ଆମ ପରି ଚଲାବୁଲା କରୁଥିଲେ ।


ଗରିଲା


ପ୍ରୋକନସଲ୍


ଅଷ୍ଟ୍ରାଲୋପିଥେକସ୍


ଆଧୁନିକ ମଣିଷ

ଏଠାରେ ମନରେ କେତୋଟି ପ୍ରଶ୍ନ ଉଠେ । ସେମାନେ କାହିଁକି ପଛ ଦୁଇ ଗୋଡ଼ରେ ଠିଆ ହେଲେ ? ସେମାନଙ୍କ ଶ୍ୱାନଦାନ୍ତଗୁଡ଼ିକର ଆକାର କାହିଁକି ଛୋଟେଇଗଲା? ଏ ବିଷୟରେ ଆମେ କିଛି ଆଲୋଚନା କରିବା । ଆଗରୁ ଆମେ ଆଲୋଚନା କରିଥିଲେ, କିପରି ପରିସ୍ଥିତି ଅନୁସାରେ ବଣମଣିଷମାନେ ଗଛ ଉପର ଛାଡ଼ି ଗଛ ତଳେ ଚଳପ୍ରଚଳ କରିଥିଲେ । ଆଫ୍ରିକାର ସାଭାନା ମାଳଭୂମି ଅଞ୍ଚଳ ଏଥିପାଇଁ ଏକ ଅନୁକୂଳ ଜାଗା ଥିଲା । ଏଠାରେ ପ୍ରଚୁର ପରିମାଣରେ ସବୁଜ ବୁଦା, ଛୋଟ ଗଛ, ଘାସ ଆଦି ଭରି ରହିଥିଲା । ଏଠାରୁ ସେମାନେ ଯଥେଷ୍ଟ ଖାଦ୍ୟ ଓ ସୁରକ୍ଷା ବି ପାଇପାରିଲେ ।

ଆଗ ଗଛରୁ ଓହ୍ଲାଇ ସେମାନେ ଏହି ବୁଦାଳିଆ ଇଲାକାରେ କିଛି କିଛି ସମୟ କଟାଉଥିଲେ । କିନ୍ତୁ ଏଠାକାର ମଜା ପାଇଲା ପରେ ସେମାନେ ଏଠାରେ ନିଜର ସ୍ଥାୟୀ ବସତି ବସାଇଥିଲେ । କିନ୍ତୁ ଏଥିପାଇଁ ହିଁ ସେମାନେ ପଛ ଦୁଇଗୋଡ଼ରେ ଠିଆ ହୋଇଗଲେ କହିବା ଯଥେଷ୍ଟ ହେବ ନାହିଁ । କାରଣ ଗରିଲାମାନେ ବି ଗଛ ଉପରୁ ତଳକୁ ଚାଲି

ଆସିଥିଲେ । କିନ୍ତୁ ସେମାନେ ଏପରି ହେଲେ ନାହିଁ । କିନ୍ତୁ ଏହି ଅଷ୍ଟ୍ରାଲୋପିଥେକସ୍‌ମାନଙ୍କ ଶରୀର ଗଠନ ଓ ହାବଭାବ ତାଙ୍କୁ ଏ ଦିଗରେ ବାଟ କଢ଼ାଇଥିଲା । ଫଳରେ ସେମାନଙ୍କ ଆଗ ଗୋଡ଼ ଦୁଇଟି ଆଉ ବାଟ ଚାଲିବାରେ ନ ଲାଗି ଅନ୍ୟାନ୍ୟ କାମ କରିପାରିଲା । ବିଶେଷ କରି ବିଭିନ୍ନ ଜିନିଷକୁ ବୋହିବା, ଟାଣିବା ବା କାଠ ପଥରରେ ବିବିଧ ହତିଆର ତିଆରି କାମରେ ଲାଗିପାରିଲା ।

କେତେ ଜଣ ଜୀବବିଜ୍ଞାନୀ ଯୁକ୍ତି କରନ୍ତି, ସିଧା ଠିଆ ହେଲା ପରେ ହିଁ ବଣମଣିଷ ବିଭିନ୍ନ ହତିଆର ଗଢ଼ିବା ଶିଖିଲା । କିନ୍ତୁ ଏହାର ଓଲଟା ପ୍ରକ୍ରିୟାଟି ଅଧିକ ଯୁକ୍ତିଯୁକ୍ତ । ହତିଆର ତିଆରି ଓ ବ୍ୟବହାର ଶିଖିବା ପରେ ହିଁ ମଣିଷ ସିଧା ଚାଲି ଥାଇପାରେ । କାରଣ ବଣମଣିଷ, ମାଙ୍କଡ଼ ଆଦି ଜୀବ ଗଛରେ ରହନ୍ତି । କିନ୍ତୁ ସେମାନେ ହତିଆର ବ୍ୟବହାର କରି ଜାଣନ୍ତି । ଏମାନେ ପଥର ଫିଙ୍ଗନ୍ତି, କାଠି ବା ବାଡ଼ିରେ କେଞ୍ଚନ୍ତି, ଉଖାରନ୍ତି, ବିଭିନ୍ନ ଡ଼ାଳରୁ ପତ୍ର ଛିଡ଼ାଇ ବାଡ଼ି ବନାନ୍ତି । ଜଣେ ହତିଆର ବନାଳୀ ପଛ ଦୁଇଗୋଡ଼ରେ ଠିଆ ହେଲେ ହିଁ ସୁବିଧାରେ ଏହାକୁ ବ୍ୟବହାର କରିପାରିବ । ତା'ର ଦୁଇହାତ ଓ ମୁଣ୍ଡ ମୁକ୍ତ ରହିଲେ ସେ ଅଧିକ ଦକ୍ଷ ହୋଇ କାମ କରିପାରିବ । ହତିଆର ବନାଇବା, ବଡ଼ ପଶୁ ଶିକାର କରିବା ଆଦି ପାଇଁ ହାତ, ମୁଣ୍ଡର କାମ ବହୁତ ଅଧିକ । ଏହାଛଡ଼ା ଖାଦ୍ୟକୁ ପାଟିରେ ପୂରାଇବା ଆଗରୁ ଏହାକୁ ହାତରେ ଭାଙ୍ଗି ରୁଜି ବାଗେଇବା ବି ବେଶ୍ ସହଜ । ହାତରେ ଏହି କାମଟି ହୋଇ ପାରିବାରୁ ପାଟିରେ ମୁନିଆ ଶ୍ୱାନ ଦାନ୍ତର ବିଶେଷ ଲୋଡ଼ା ହେଲା ନାହିଁ । ତେଣୁ ବଂଶ ପରେ ବଂଶକୁ ସେମାନଙ୍କ ଶ୍ୱାନ ଦାନ୍ତ ବି ଛୋଟ ହେବାରେ ଲାଗିଲା । ଏହା ଏବେ ଖାଦ୍ୟକୁ ଛିଡ଼ାଇବା ବା ପେଷିବା କାମରେ ସାହାଯ୍ୟ କଲା । ଦେହର ଗଠନ ଓ ହତିଆର ଉପଯୋଗ ଯୋଗୁଁ ଅଷ୍ଟ୍ରାଲୋପିଥେକସ୍‌ମାନେ ଗଛଠାରୁ ବହୁତ ଦୂରକୁ ବି ଯାଇପାରିଲେ ।

ଏମାନେ କ୍ରମଶଃ ଭୂଇଁ ଉପରେ ଯଥେଷ୍ଟ ଅଭ୍ୟସ୍ତ ହୋଇପାରିଲେ । ଏମାନେ ବେଶ୍ ଶୀଘ୍ର ଚାଲିପାରୁଥିଲେ । ଶିକାର କରି ସେମାନେ ବିଭିନ୍ନ ପଶୁପକ୍ଷୀଙ୍କ ମାଂସ ଖାଉଥିଲେ । କ୍ରମେ ଶିକାର ତାଙ୍କ ଜୀବନର ଏକ ଗୁରୁତ୍ୱ ପୂର୍ଣ କାମ ହୋଇଗଲା । ସେମାନେ ଦଳ ଦଳ ହୋଇ ଚଳିବାରେ ଲାଗିଲେ । ଏହା ତାଙ୍କର ଶିକାର ଓ ସୁରକ୍ଷାରେ ଯଥେଷ୍ଟ ସାହାଯ୍ୟ କଲା । ସେମାନେ ଦଳରେ ରହିବାକୁ ଆରମ୍ଭ କଲେ । ପାଣି ଓ ସୁରକ୍ଷାର ସୁବିଧା ଦେଖି ସେମାନେ ବିଭିନ୍ନ ଗୁମ୍ଫାରେ ତାଙ୍କର ଦଳ-ବସତି ଗଢ଼ିଲେ । ସେମାନଙ୍କ କାମ ବାଣ୍ଟି ହୋଇ ପାରିଲା । ସେମାନେ ନୂଆ ନୂଆ ଜ୍ଞାନ ପାଇଲେ । ନୂଆ ନୂଆ ହତିଆର ବନାଇଲେ । ତାଙ୍କ ଦଳର ବଳ ବଢ଼ିଲା । ଏହା ତାଙ୍କର ମସ୍ତିଷ୍କକୁ ଅଧିକ ଉନ୍ନତ କଲା । ନିଜ ନିଜ ଭିତରେ ଭାବ ବିନିମୟ ପାଇଁ ବିଭିନ୍ନ ଠାର ଲୋଡ଼ା ହେଲା । ଏଥିରୁ କ୍ରମଶଃ ଭାଷାର ବିକାଶ ହେଲା । ଅସ୍ତ୍ରର ବ୍ୟବହାର ଶିଖିବା ପରେ ନିଆଁର ଆବିଷ୍କାର ସେମାନଙ୍କ ପାଇଁ ଆଉ ଏକ ବଡ଼ କଥା ଥିଲା । ସେମାନେ ନିଜ ଗୁମ୍ଫାକୁ ଉଷୁମ ରଖିପାରିଲେ, ହିଂସ୍ର

ଜୀବଜନ୍ତୁଙ୍କୁ ଦୂରେଇ ରଖିଲେ । ରାତିରେ ଆଲୁଅ ପାଇ ପାରିଲେ ଓ ସିଝା ବା ପୋଡ଼ା ମାଉଁସର ସୁଆଦ ଜାଣିଲେ ।

ସେମାନଙ୍କ ସଂଖ୍ୟା ବଢ଼ିବା ସାଙ୍ଗକୁ ଜଙ୍ଗଲ ଛାଡ଼ି ବାହାରକୁ ବି ଯିବାକୁ ପଡୁଥିଲା । ବାହାରେ ସେମାନଙ୍କୁ ନୂଆ ନୂଆ ବିପଦର ସାମନା କରିବାକୁ ପଡିଥିବ । ତେଣୁ ସେମାନେ ଦଳରେ ଚଳିବା, ଶିକାର କରିବା ଆଦି କାମ କରିବାକୁ ବାଧ୍ୟ ହୋଇଥିବେ । ନିଜର ବଂଶ ବୃଦ୍ଧି ପାଇଁ ମିଳନ, ଶିଶୁପାଳନ ଆଦି ପାଇଁ ଦଳରେ ରହିବାକୁ ହିଁ ସୁବିଧା ମଣିଥିବେ । ଏହା ତାଙ୍କର ଏକ ନିର୍ଦ୍ଦିଷ୍ଟ ସଂସ୍କୃତି ଗଢ଼ିବାରେ ବି ସାହାଯ୍ୟ କରିଥିବ । ଏ ସବୁ ଦିଗରୁ ଦେଖିଲା ବେଳକୁ ଅଷ୍ଟ୍ରାଲୋପିଥେକସ୍‌ମାନେ ସାଧାରଣ ପଶୁ ପକ୍ଷୀ ବା ବଣୁଆ ମାଙ୍କଡ଼ଙ୍କ ଅପେକ୍ଷା ଅନେକ ପରିମାଣରେ ଉନ୍ନତ ଜୀବନଯାପନ କରୁଥିଲେ । କିନ୍ତୁ ଏହି ସ୍ତରରେ ପହଞ୍ଚିବା ପାଇଁ ବଣମଣିଷ ଜାତିଟିକୁ କେତେ କୋଟି ବର୍ଷ ଲାଗିଯାଇଥିଲା । ଆନୁମାନିକ ଏହା ଥିଲା ତିନି କୋଟିରୁ ବେଶୀ ବର୍ଷର ଏକ ଲମ୍ୱା କାହାଣୀ ।

ଊନବିଂଶ ଶତାବ୍ଦୀର ଶେଷ ଭାଗରେ ଜର୍ମାନୀର ହେକେଲ୍ ନାମକ ଜଣେ ଜୀବବିଜ୍ଞାନୀ ସୂଚନା ଦେଲେ ଯେ, ଏସିଆର ଦକ୍ଷିଣ ଭାଗରେ ଇଣ୍ଡୋନେସିଆର ସୁନ୍ଦା ଦ୍ୱୀପ ଅଞ୍ଚଳରେ ମାଙ୍କଡ଼-ମଣିଷର ହାଡ଼ ମିଳିପାରେ । ଏ କଥାରେ ଇଉଜିନ୍ ଦୁବୋଇସ୍ ନାମକ ଜଣେ ବିଶ୍ୱବିଦ୍ୟାଳୟ ଅଧ୍ୟାପକ ମାତିଗଲେ । ସେ ଚାକିରୀ ଛାଡ଼ି ସୈନ୍ୟ ବିଭାଗରେ ଯୋଗ ଦେଲେ । ଅନେକ ବାଧା ବିଘ୍ନକୁ ସହି ସେ ସେହି ଇଲାକାରେ ହାଡ଼ ଖୋଜା ଚଳାଇଲେ । ତିନି ବର୍ଷରୁ ବେଶୀ ଖୋଜତାଡ଼ ଚଳାଇ ଶେଷରେ ସେ ଜାଭା ଦ୍ୱୀପରେ କିଛି ହାଡ଼ ଆବିଷ୍କାର କଲେ । ଏହା ଥିଲା ଉରୁ ହାଡ଼, ଦୁଇଟି ଦାନ୍ତ ଓ ଖପୁରୀର ଉପର ଅଂଶ । ଉରୁ ହାଡ଼ର ଅନ୍ୟ କିଛି ଅଂଶ ପରେ ପରେ ମିଳିଲା । ଏହାର ଖପୁରୀରୁ ଜଣାପଡ଼ିଲା ଯେ, ଏମାନେ ଅଧିକା ଚାଲାକ୍ । ଆଶା କରାଗଲା ଯେ, ଏମାନେ ବଙ୍କାଇ ବଙ୍କାଇ ଚାଲୁଥିବେ, ଦେହ ଅଳ୍ପ କୁଜା ଥିବ ଓ ହାତ ଦୁଇଟା ମାଟି ଯାଏଁ ଲମ୍ୱିଥିବ । ଏହା ଥିଲା ବଣମଣିଷଙ୍କ ଦ୍ୱିତୀୟ ଦଫା ଜୀବ । ଏମାନଙ୍କୁ **ଜାଭା ମଣିଷ** ନାଁ ଦିଆଗଲା ।

ପ୍ରାୟ ପଚାଶ ବର୍ଷ ଯାଏଁ ଦୁବୋଇସ୍‌ଙ୍କ କାମକୁ ସମସ୍ତେ ସନ୍ଦେହ ଆଖିରେ ଦେଖିଲେ । କାରଣ ତାଙ୍କ ଆବିଷ୍କାରରେ ଖପୁରୀ ଓ ଜଙ୍ଘ ହାଡ଼ରେ ଆଶା ମୁତାବକ ମେଳ ନଥିଲା । ୧୯୩୦ ମସିହା ବେଳକୁ ଜାଭା ମଣିଷର ଅଧିକ ଜୀବାଶ୍ମ ଆବିଷ୍କାର ହୋଇପାରିଲା । ବିଂଶ ଶତାବ୍ଦୀ ବେଳକୁ ଜାଭା ମଣିଷଙ୍କ କଥା ପୁଣି ବିଚାର କରାଗଲା । ଏଥର ଏମାନଙ୍କୁ **ହୋମୋ ଇରେକ୍ଟସ୍** (ସଳଖ ମଣିଷ) କୁହାଗଲା । ଜାଭା ମଣିଷର ଖପୁରୀ ଅଷ୍ଟ୍ରାଲୋପିଥେକସ୍ ଭଳି ନଥିଲା । ଏମାନଙ୍କ ମସ୍ତିଷ୍କର ଆକାର ସବୁଠୁ ବଡ଼ ବଣମଣିଷଙ୍କ ଖପୁରୀ ଓ ଆଧୁନିକ ମଣିଷର ଖପୁରୀର ମଝି ମଝିଆ ଥିଲା । ଅଷ୍ଟ୍ରାଲୋପିଥେକସ୍‌ଙ୍କ ଖପୁରୀ ଠାରୁ ଏହା ପ୍ରାୟ ଦୁଇ ଗୁଣ ବଡ଼ ଥିଲା । ଜାଭା ମଣିଷର



( ହୋମୋଇରେକ୍‌ଟସ୍ )

କପାଳ ଓସାରିଆ ଥିଲା; କିନ୍ତୁ ଭିତରପଟକୁ ଉଷୁତ ଖାଲୁଆ ଥିଲା । ଆଖିପତାଗୁଡ଼ିକ ମୋଟା ଓ ସ୍ପଷ୍ଟ ଜଣାପଡୁଥିଲା; ଖପୁରୀର ଗଠନ ବି ପ୍ରାୟ ଆଧୁନିକ ମଣିଷ ପରି ଥିଲା । ଅତଏବ୍ ହୋମୋଇରେକ୍‌ଟସ୍ ଅଧିକ ବୁଦ୍ଧିଆ ନ ଥିଲେ ଓ ଏମାନଙ୍କ ମୁହଁ ବଣମଣିଷଙ୍କ ପରି ଥିଲା । କିନ୍ତୁ ସେମାନେ ବହୁତ ଚାଲାକ ଥିଲେ । ସେମାନେ ସିଧା ଚାଲୁଥିଲେ । ସେମାନଙ୍କ ବେକ ଓ ଗଣ୍ଡଦେଶ ବେଶ୍ ମଜବୁତ୍ ଥିବା ଯୋଗୁଁ ଏହା ତାଙ୍କର ଶକ୍ତ ମାଢ଼ି ଦୁଇଟିକୁ ସମ୍ଭାଳି ପାରୁଥିଲା ।

୧୯୨୦ ଦଶକ ବେଳକୁ ଚୀନ ଦେଶରେ ଜାଭା ମଣିଷ ପରି କିଛି ଜୀବାଶ୍ମ ଆବିଷ୍କାର କରାହେଲା । ୧୯୨୬ରେ ଚୀନ୍‌ର ପେକିଂ ସହର ପାଖରେ ଥିବା ଚାଉ-କୁ-ଟିଏନ୍‌ର ଗୁମ୍ଫାରୁ ପ୍ରଫେସର ଡ଼େଭିଡ୍‌ସନ ବକ ନାମକ ଜଣେ ବୈଜ୍ଞାନିକ କେତେକ ଖପୁରୀ ଓ ହାଡ଼ ଆବିଷ୍କାର କଲେ । ଏଠାରେ ବି ପୂରା କଙ୍କାଳଟି ମିଳି ନଥିଲା । ମୋଟ ଉପରେ ୫୦ଟି ଦାନ୍ତ, ତିନୋଟି ଖପୁରୀ, ଏଗାରଟି ଦାନ୍ତମାଢ଼ି, ଗୋଟିଏ ଉରୁ ହାଡ଼, ଗୋଟିଏ ମେରୁଦଣ୍ଡ, ଖଣ୍ଡିଏ କଣ୍ଠ ହାଡ଼, ଗୋଟିଏ ମଣିବନ୍ଧ ହାଡ଼ ଓ ଗୋଟିଏ ଗୋଡ଼ ହାଡ଼ ମିଳିଲା । ଏଥିରୁ ଧରାଗଲା ଯେ, ଗୁମ୍ଫାଟିରେ ଦଳେ ବଣମଣିଷ ବାସ କରୁଥିଲେ । ଏମାନଙ୍କୁ **ପେକିଂ ମଣିଷ** ନାମ ଦିଆଗଲା ।

ଗୁମ୍ଫାଟିକୁ ଖୋଳିବା ପରେ ସେଠାରେ ନିଆଁ ବ୍ୟବହାର କରାଯାଉଥିବାର ଜଣାପଡ଼ିଲା । ପଥରର ଅନେକ ହତିଆର ବି ମିଳିଲା । ଜାଭା ମଣିଷ ଅପେକ୍ଷା ଏମାନଙ୍କ ଖପୁରୀ ଓ ମସ୍ତିଷ୍କର ଜାଗା ବଡ଼ ଜଣାପଡ଼ିଲା । କିନ୍ତୁ ଏମାନଙ୍କ ମାଢ଼ିଗୁଡ଼ିକ ବଡ଼ ଥିଲା ଓ ଏହା ନାକରୁ ଆଗକୁ ବାହାରି ଆସିଥିଲା । ଜାଭା ମଣିଷ ସହ ଅନେକ ମେଳଥିବାରୁ ଏହାକୁ ବି ହୋମୋ ଇରେକ୍‌ଟସ୍ ଶ୍ରେଣୀରେ ରଖାଗଲା । ଏମାନେ ନିଆଁର ବ୍ୟବହାର ସହ ବିଭିନ୍ନ ହତିଆର ବନାଇ ବ୍ୟବହାର କରୁଥିଲେ । ବିଭିନ୍ନ ରକମର ବଡ଼ ପଶୁପକ୍ଷୀଙ୍କୁ ଏମାନେ ଶୀକାର କରୁଥିଲେ ।

୧୯୭୫ ମସିହା ବେଳକୁ କେନିଆର ତୁର୍କାନା ହ୍ରଦରୁ ଗୋଟିଏ ହୋମୋ ଇରେକ୍‌ଟସ୍ ଖପୁରୀର ଜୀବାଶ୍ମ ମିଳିଲା । ଏହାର ମସ୍ତିଷ୍କର ଆୟତନ ଥିଲା ପ୍ରାୟ ୯୦୦

ମିଲିଲିଟର । ଏହା ଅଷ୍ଟ୍ରାଲୋପିଥେକସ୍ ମସ୍ତିଷ ଠାରୁ ପ୍ରାୟ ଦୁଇଗୁଣ ବଡ଼ । ଏହି ଜୀବାଶ୍ମର ବୟସ ପ୍ରାୟ ପନ୍ଦର ଲକ୍ଷ ବର୍ଷ ଥିଲା ।

ଟାଞ୍ଜାନିଆର ଓଲଡୁଭାଇ ଜର୍ଜ ନାମକ ଏକ ଜାଗାରୁ ଅନେକଗୁଡ଼ିଏ ଅତି ଗୁରୁତ୍ୱପୂର୍ଣ୍ଣ ଜୀବାଶ୍ମ ମିଳିଛି । ଏଥିରୁ ଗୋଟିଏ ପ୍ରକାର ଜୀବାଶ୍ମ ବିଶେଷ ଧରଣର ମନେ ହେଉଛି । ୧୯୬୧ ମସିହା ବେଳକୁ ଆବିଷ୍କୃତ ଏହି ଜୀବାଶ୍ମଟି ଅଷ୍ଟ୍ରାଲୋପିଥେକସ୍ ଓ ହୋମୋ ଇରେକ୍‌ଟସ୍ ର ମଝି ସ୍ତରର ପରି ଜଣାପଡୁଛି । ଏମାନଙ୍କ ଶ୍ରେଣୀର ନାଁ ରଖାଯାଇଛି **ହୋମୋ ହାବିଲିସ୍** (କାମିକା ଲୋକ ମଣିଷ) ।



(ହୋମୋ ହାବିଲିସ୍)

୧୯୮୬ ମସିହାରେ ଟିମ୍ ହ୍ୱାଇଟ୍ ଓ ଡୋନାଲ୍ଡ୍ ଜୋହାନ୍‌ସନ୍ ହୋମୋ ହାବିଲିସ୍ ଶ୍ରେଣୀର ଗୋଟିଏ ଜୀବାଶ୍ମ ଆବିଷ୍କାର କଲେ । ଏହା ପ୍ରାୟ ୧୮ ଲକ୍ଷ ବର୍ଷ ପୁରୁଣା ମନେ ହେଉଛି । ଆଶା କରାଯାଏ ଯେ, ହୋମୋ ହାବିଲସ୍, ରୋବଷ୍ଟ୍ ଅଷ୍ଟ୍ରାଲୋପିଥେକସ୍ ଓ ଅଷ୍ଟ୍ରାଲୋପିଥେକସ୍ ଆଫ୍ରିକାନସ୍‌ମାନେ ପ୍ରାୟ ଏକା ସମୟରେ ଆଫ୍ରିକାରେ ବସବାସ କରୁଥିଲେ । ହୋମୋ ହାବିଲିସ୍‌ମାନେ ଗେଡ଼ା ଥିଲେ ( ପ୍ରାୟ ଏକ ମିଟର ଉଚ୍ଚ ) । ତାଙ୍କ ହାତ ତଳକୁ କହୁଣୀ ଯାଏଁ ଲମ୍ବିଥିଲା । ଏମାନେ ଥିଲେ ପ୍ରଥମ ମଣିଷ ଯିଏ ପଥରରେ ହତିଆର ବନାଇଥିଲେ । କିନ୍ତୁ ପ୍ରାୟ ୧୬ ଲକ୍ଷ ବର୍ଷ ତଳେ ଏମାନଙ୍କ ବଦଳରେ ହୋମୋ ଇରେକ୍‌ଟସ୍‌ମାନେ ଆଗେଇଗଲେ । ଏମାନଙ୍କ ହାତ କହୁଣୀ ଯାଏଁ ଲମ୍ବି ନଥିଲା । ଏହି ଦୁଇ ଲକ୍ଷ ବର୍ଷ ଭିତରେ ମଣିଷ ବିବର୍ତ୍ତନର ଏକ ଗୁରୁତ୍ୱପୂର୍ଣ୍ଣ ପରିବର୍ତ୍ତନ ଘଟିଥିଲା ।

ହୋମୋ ହାବିଲିସ୍‌ରୁ ହୋମୋ ଇରେକ୍ଟସ୍ ଅବସ୍ଥାରେ ପହଞ୍ଚିବାକୁ ପ୍ରାୟ ଦୁଇ ଲକ୍ଷ ବର୍ଷ ଲାଗି ଯାଇଥିଲା । ଏହା ଭିତରେ ମଣିଷ ଗଛରେ ରହିବା ଛାଡ଼ି ପୂରାପୂରି ଜଣେ ଭୂମିଚର ପ୍ରାଣୀ ବନି ଯାଇଥିଲା । ଏତେ ବଡ଼ ଏକ ନାଟକୀୟ ଓ ଦ୍ରୁତ ପରିବର୍ତ୍ତନ କିପରି ଘଟିଲା ତାହାକୁ ବୁଝିବା ଏକ କାଠିକର କଥା; କିନ୍ତୁ ମୂଳତଃ ଆଫ୍ରିକାରୁ ଅନେକ ତଥ୍ୟକୁ ନେଇ ମଣିଷ ଏପରି ଏକ ସମ୍ଭାବନାର ଛବି ଆଙ୍କିଛି ।

ଆମେ ହୋମୋ ଇରେକ୍ଟସ୍‌ର ଜୀବନଧାରାକୁ ଦେଖିବା । ସେମାନେ ମୁଖ୍ୟତଃ ଶୀକାର ଉପରେ ନିର୍ଭର କରୁଥିଲେ ଓ ମାଂସ ତାଙ୍କର ମୂଳ ଆହାର ଥିଲା । ସେମାନେ ନିଆଁ ବ୍ୟବହାର କରୁଥିଲେ । ପଥରର ବିଭିନ୍ନ ହତିଆର ଗଢୁଥିଲେ । ସେମାନେ ହାତ ଟାଙ୍ଗିଆ ପରି ଏକ ଛୋଟ ଯନ୍ତ୍ର ବ୍ୟବହାର କରୁଥିଲେ । ସେମାନେ ବେଶ୍ ନୃଶଂସ ଥିଲେ ଓ ବେଳେବେଳେ ସାଥି ମଣିଷଙ୍କୁ ବି ମାରି ଖାଇ ଯାଉଥିଲେ । ଏମାନେ ପ୍ରାୟ ଦୁଇରୁ ତିନି ଲକ୍ଷ ବର୍ଷଯାଏଁ ଗୁମ୍ଫାରେ ରହୁଥିଲେ । ପ୍ରାୟ ୪ ଲକ୍ଷ ବର୍ଷ ତଳୁ ସେମାନେ ନିଆଁର ବ୍ୟବହାର ଜାଣିଥିଲେ । ଏମାନେ ନିଆଁ ବନାଳୀ ଅପେକ୍ଷା ନିଆଁ-ଚୋରାଳୀ ଥିଲେ କହିବା ବେଶୀ ଠିକ୍ ହେବ । ଜୀବାଶ୍ମ ଆବିଷ୍କାର କରାଯାଇଥିବା କୈଣସି ଜାଗାରୁ ବି ନିଆଁ ବାହାର କରାଯିବାର ଯନ୍ତ୍ର ମିଳିନାହିଁ । କିନ୍ତୁ ନିଆଁ ବ୍ୟବହାର କରାଯାଇଥିବାର ଅନେକ ସୂଚନା ମିଳିଛି ।

ହୋମୋ ଇରେକ୍ଟସ୍‌ଙ୍କ କଙ୍କାଳଗୁଡ଼ିକ ଆଫ୍ରିକା, ଚୀନ୍ ଓ ଜାଭାର ବିଭିନ୍ନ ଜାଗାରୁ ମିଳିଛି । ଆଧୁନିକ ମତ କହେ, ଏମାନଙ୍କ ଆରମ୍ଭ ଆଫ୍ରିକାରେ । କ୍ରମେ ଏମାନେ କିପରି ଅନ୍ୟ ଜାଗାକୁ ବ୍ୟାପିଗଲେ, ତାହା ସ୍ପଷ୍ଟ ଭାବେ ଜଣା ପଡୁନାହିଁ । କିନ୍ତୁ ସେମାନେ ଏପରି ଖେଳାଇ ଯିବା ପାଇଁ ଅନେକ ବଂଶ ଓ ଲମ୍ବା ସମୟ ଲାଗିଥିବ । ହୋମୋ ଇରେକ୍ଟସମାନେ ଲୁଗାପଟା ପିନ୍ଧୁଥିଲେ ନା ନାହିଁ; ଗୁମ୍ଫା ଛଡ଼ା ସେମାନେ ଅନ୍ୟ ବସତି ଗଢ଼ିଥିଲେ ନା ନାହିଁ - ଏ କଥା ଆମକୁ ଜଣାନାହିଁ । ଆମ ଆଖିରେ ସେମାନେ ଥିଲେ ଦଳ ଦଳ ଶିକାରୀ ଗୋଷ୍ଠୀ । କିନ୍ତୁ ସେମାନଙ୍କ ସାମାଜିକ ବ୍ୟବସ୍ଥା, ଧର୍ମ, କଳା, ବା ସଂସ୍କୃତି ଆଦି ବିଷୟରେ ଆମର ଧାରଣା ନାହିଁ । ଜୀବାଶ୍ମ ମାଧ୍ୟମରେ ଏସବୁକୁ ଠଉରାଇବା ସମ୍ଭବପର ନୁହେଁ । ପରବର୍ତ୍ତୀ ସମୟରେ ହୋମୋ ଇରେକ୍ଟସ୍‌ମାନଙ୍କର କ'ଣ ହେଲା ତାହା ବି ଆମକୁ ଜଣାନାହିଁ । କିନ୍ତୁ ଏ ଯାଏଁ ମିଳିଥିବା ତଥ୍ୟକୁ ଆଧାର କରି ଧରି ନିଆଯାଏ ଯେ, ଏମାନେ ହିଁ ବଦଳି ବଦଳି ଆଜିର ରୂପରେ ପହଞ୍ଚିଛନ୍ତି । ଆମେ ସମସ୍ତେ ତାଙ୍କର ବଂଶଧର ।

ଆଜିକୁ ପ୍ରାୟ ପାଞ୍ଚ ଲକ୍ଷ ବର୍ଷ ତଳେ ଆଧୁନିକ ମଣିଷର ଆରମ୍ଭ ହୋଇଥିଲା ବୋଲି ଧରାଯାଏ । ଏହି ସମୟ ବେଳକୁ ମଣିଷର ମସ୍ତିଷ୍କ ଯଥେଷ୍ଟ ଉନ୍ନତ ହୋଇସାରିଥିଲା । ଏଥର ଏମାନଙ୍କୁ ଏକ ନୂଆ ଶ୍ରେଣୀରେ ରଖାଗଲା । ଏହାର ନାଁ ହୋମୋ ସାପିଏନ୍‌ସ୍ । ହୋମୋ ସାପିଏନ୍‌ସ୍ କହିଲେ ଆଧୁନିକ ଉନ୍ନତ ମଣିଷଙ୍କୁ ବୁଝାଏ । ତେଣୁ ପାଞ୍ଚ ଲକ୍ଷ ବର୍ଷ ତଳର ଏହି ଉନ୍ନତ ମଣିଷଙ୍କୁ ଆମେ **ପ୍ରାରମ୍ଭିକ ହୋମୋ ସାପିଏନ୍‌ସ୍** ବୋଲି କହିପାରିବା ।

୧୮୪୮ ମସିହାରେ ଜିବ୍ରାଲ୍‌ଟାର୍ ଅଞ୍ଚଳର ଏକ ଗୁମ୍ଫାରେ ଗୋଟିଏ ଖପୁରୀ ଆବିଷ୍କାର କରାଗଲା । ଏହା ଆଗର ଖପୁରୀ ଠାରୁ ବେଶ୍ ଅଲଗା ଥିଲା । ଏହା ଚାରିଆଡ଼େ



(ପ୍ରାରମ୍ଭିକ ହୋମୋ ସାପିଏନ୍‌ସ୍ )

ବେଶ୍ ଚହଳ ସୃଷ୍ଟି କଲା । ୧୮୫୬ ମସିହାରେ ଜର୍ମାନୀର ନିଆଣ୍ଡେର ଅଞ୍ଚଳରେ ଚୂନପଥର ଗୁମ୍ଫାରୁ କେତେକ ହାଡ଼ ମିଳିଲା । ଏହି ଖପୁରୀର ତାଳୁ ଉପରଟି ବେଶ୍ ମୋଟା ଥିଲା । ଆଖିପତା ଯୋଡ଼ାକ ବହୁତ ମୋଟା ଥିଲା । କପାଳଟି ଭିତର ପଟକୁ ଖାଲୁଆ ଥିଲା । କପାଳଟି ବେଶ୍ ଚଉଡ଼ା ଥିଲା; କିନ୍ତୁ ମୁଣ୍ଡ ପଛଟି ପଛକୁ ବେଶ୍ ଫୁଲିଥିଲା । ଏହା ଆଜିର ମଣିଷ ଠାରୁ ପଛ ପଟକୁ ଅଧିକ ଫୁଲି ରହିଥିଲା । ଏହା ଥିଲା ଡ଼ାରଉ୍ଇନ୍‌ଙ୍କର ବିଖ୍ୟାତ ଓ ବିବାଦାସ୍ପଦ 'ବିବର୍ତ୍ତନ' ସମ୍ପର୍କୀୟ ପୁସ୍ତକ ଛପାଯିବାର ତିନି ବର୍ଷ ପୂର୍ବର ଘଟଣା । ଏହି ଆବିଷ୍କାରଟି ବିଜ୍ଞାନୀ ସମାଜରେ ଯଥେଷ୍ଟ ଆଲୋଡ଼ନ ସୃଷ୍ଟି କଲା ।

ବୈଜ୍ଞାନିକ ହକ୍‌ସଲି ଏହି ଜୀବଟିର କେତେକ ବିଶେଷ ଗଠନ ଓ ହାବଭାବକୁ ସୂଚାଇଲେ । ଆବିଷ୍କାର ହୋଇଥିବା ଜାଗାଟିର ନାଁ ଅନୁସାରେ ଏହାର ନାଁ ରହିଲା **ନିଆଣ୍ଡେରଥାଲ୍ ମଣିଷ ।**

ଏହାର ଖପୁରୀ ଖୋଳରୁ ମନେ ହେଉଥିଲା ଯେ, ଏହା ଏକ ମଣିଷ ଜାତିର ବଣମଣିଷ ହୋଇଥାଇପାରେ । ପରେ ବେଲଜିଅମ୍ ଅଞ୍ଚଳରେ ବି ମାଟି ତଳୁ ଏପରି କିଛି ଜୀବାଶ୍ମ ମିଳିଲା । ଏଗୁଡ଼ିକର ନିଆଣ୍ଡେରଥାଲ୍ ମଣିଷ ସହିତ ଅନେକ ମେଳ ରହିଥିଲା । ସେହି ଏକା ଜାଗାରୁ ଗୋଟିଏ ବିଶାଳ ଦନ୍ତା ହାତୀ (ମାମୋଥ୍), ପ୍ରାଚୀନ ଗଣ୍ଡା ଓ କେତେକ ବିଲୁପ୍ତ ଜୀବଙ୍କର କଙ୍କାଳ ବି ମିଳିଲା । ନିଆଣ୍ଡେରଥାଲ୍ ମଣିଷଙ୍କର କଙ୍କାଳ ଇଟାଲୀ, ଫ୍ରାନ୍‌ସ୍ , ପାଲେଷ୍ଟାଇନ୍ , ସାଇବେରିଆ, ଦକ୍ଷିଣ ଋଷିଆ ଓ ଉତ୍ତର ଆଫ୍ରିକାରେ ମଧ୍ୟ ମିଳିଛି ।



(ନିଆଣ୍ଡେରଥାଲ୍ ମଣିଷ)

ନିଆଣ୍ଡେରଥାଲ୍ ମଣିଷ ଏକ ଲକ୍ଷ ବର୍ଷ ପୂର୍ବେ ୟୁରୋପରେ ଚଲାବୁଲା କରୁଥିଲେ ବୋଲି ଆଶା କରାଯାଏ । ପ୍ରାୟ ୩୦ ହଜାର ବର୍ଷ ତଳେ ଏହି ମୂଳ ଜାତିଟି ଲୋପ ପାଇଯାଇଥିବାର ଜଣାପଡୁଛି । ଏମାନଙ୍କୁ **ଗୁମ୍ଫା ମଣିଷ** ବୋଲି ବି କୁହାଯାଇପାରେ । କାରଣ ଏମାନେ ମୁଖ୍ୟତଃ ବିଭିନ୍ନ ଗୁମ୍ଫାରେ ହିଁ ବସବାସ କରୁଥିଲେ । ନିଆଣ୍ଡେରଥାଲ୍ ମଣିଷଙ୍କର କେତେକ ବିଶେଷତ୍ୱ ଥିଲା ବର୍ବରତା, ଅଖାଡୁଆ ଆକାର, ଅକର୍ମଣ୍ୟ ଚାଲି ଓ କୁଞ୍ଚାଳିଆ ଦେହ । ବେଳେ ବେଳେ ପ୍ରଶ୍ନ ଉଠେ, ଏମାନେ କ'ଣ ସତରେ ମଣିଷର କ୍ରମ ବିବର୍ତ୍ତନର ଏକ ଅଂଶ ? ଆଧୁନିକ ଯୁକ୍ତି କହେ, କୌଣସି ରୋଗ ଯୋଗୁଁ ଏମାନଙ୍କର ଦେହର ଗଠନ ଏପରି ଅଖାଡୁଆ ହୋଇଥାଇପାରେ ।

ଗୋଟିଏ ମତବାଦ ଅନୁସାରେ ସେମାନେ ମୁଖ୍ୟତଃ ବରଫ ଯୁଗ ସମୟରେ ଗୁମ୍ଫାରେ ବେଶୀ ସମୟ କଟାଉଥିଲେ । ସୂର୍ଯ୍ୟ କିରଣ ନ ପାଇ ତାଙ୍କ ଦେହରେ କାଲ୍‌ସିଫେରଲ୍ (ଚୂନ ଉତ୍ପାଦକ) କମିଯାଇଥିବ । ଏହା ଦ୍ୱାରା ତାଙ୍କ ହାଡ଼ ଦୁର୍ବଳ ଓ ବିକୃତ (ରିକେଟ୍ ରୋଗ) ହୋଇ ଯାଉଥିବ । ଇରାକ୍‌ରେ ମିଳିଥିବା ତଥ୍ୟରୁ ଜଣାପଡୁଛି, ଏମାନେ ବେଶ୍ ଦକ୍ଷ ଶିକାରୀ ଥିଲେ । ଅନେକ ଉତ୍ତମ ହତିଆର ଗଢ଼ିଥିଲେ । ବିଭିନ୍ନ ଅସ୍ତ୍ରୋପଚାର କରୁଥିଲେ । କୌଣସି ଲୋକ ମରିଗଲେ ସେମାନେ ତାକୁ ଗାତ ଖୋଳି ପୋତି ଦେଉଥିଲେ । ଆଶା କରାଯାଏ, ଏମାନେ ବଣମଣିଷଙ୍କ ଠାରୁ ବେଶ୍ ଉନ୍ନତ ଥିଲେ । ଏବେ ବି ନିଆଣ୍ଡେରଥାଲ୍ ମଣିଷ ବିଷୟରେ ଅନେକ ବିବାଦ ରହିଛି ।

୧୯୩୩ ମସିହାରେ ଜର୍ମାନୀରେ ଷ୍ଟେନ୍‌ହେମ୍ ନାମକ ଏକ ଜାଗାରେ ଗୋଟିଏ ଖପୁରୀର ଜୀବାଶ୍ମ ମିଳିଲା । ଜୀବାଶ୍ମଟି ତିନି ଲକ୍ଷ ବର୍ଷ ପୁରୁଣା ଥିଲା । ଏହାର ନାମ ରହିଲା **ଷ୍ଟେନ୍‌ହେମ୍ ମଣିଷ** । ଏହାର କପାଳ ଖାଲୁଆ ଥିଲା । ଆଖିପତା ମୋଟା ଓ ନାକଟି ଚଉଡ଼ା ଥିଲା । କିନ୍ତୁ ମୁହଁ ଓ ମାଢ଼ିର ଗଠନ ଆଜିର ମଣିଷ ମୁହଁ ପରି ଥିଲା । ପରେ ଲଣ୍ଡନ୍‌ର କେତେକ ଜାଗାରୁ ବି ଏହି ଜାତିର ମଣିଷଙ୍କର କଙ୍କାଳ ମିଳିଛି । ଏମାନଙ୍କର ମସ୍ତିଷ୍କର ଆକାର ଆଜିର ଜଣେ ବୟସ୍କ ମହିଳାଙ୍କ ମସ୍ତିଷ୍କ ସହ ସମାନ ଥିଲା ।

ଆମର ଏହି ଲମ୍ବା କାହାଣୀଟିର ଶେଷ ପର୍ଯ୍ୟାୟଟି ଆରମ୍ଭ ହେଲା ଆଜିକୁ ପ୍ରାୟ କୋଡ଼ିଏ ହଜାର ବର୍ଷ ତଳେ । ୟୁରୋପରେ ଏହି ନିଆଣ୍ଡେରଥାଲ୍ ମଣିଷଙ୍କ ବଦଳରେ ଏକ ନୂଆ ଜାତିର ଆଧୁନିକ ମଣିଷ ଦେଖାଦେଲେ । ଦକ୍ଷିଣ ଫ୍ରାନ୍ସର କ୍ରୋ-ମାଗ୍ନନ୍ ଠାରେ ଏମାନଙ୍କର ପରା ମିଳିଛି । ତେଣୁ ଏହି ଜୀବାଶ୍ମଗୁଡ଼ିକୁ କ୍ରୋ-ମାଗ୍ନନ୍ ମଣିଷର ବୋଲି କୁହାଯାଉଛି । ଏମାନେ ଆଧୁନିକ ମଣିଷ ହୋମୋ ସାପିଏନ୍ସଙ୍କର ଏକ ରୂପ ବୋଲି ଧରାଯାଏ । ଏହି ଶ୍ରେଣୀର ମଣିଷ ଉଚ୍ଚ ଓ ବଳିଷ୍ଠ ଥିଲେ । ଆଜିର ମଣିଷ ପରି ସେମାନଙ୍କ ମସ୍ତିଷ୍କ ଉନ୍ନତ ଥିଲା । ମୁଣ୍ଡର ଗଢଣ ବି ଆଜିକା ପରି ସୁନ୍ଦର ଥିଲା । ପ୍ରସ୍ତର ଯୁଗର ଶେଷ ଭାଗରେ ଏମାନେ ଦେଖା ଦେଉଥିଲେ । ଏମାନେ ପଥରର ଘରେ



(କ୍ରୋ-ମାଗ୍ନନ୍ ମଣିଷ)

ରହୁଥିଲେ । ବିବିଧ କଳାରେ ଏମାନଙ୍କର ବେଶ୍ ରୁଚି ଥିଲା । ଏମାନେ ବେଶ୍ ସୁନ୍ଦର ଛବି, ମୂର୍ତ୍ତି ଆଦି ବନାଇଥିଲେ । ଏସବୁ ଏମାନଙ୍କର ସୃଜନଶୀଳ କ୍ଷମତାର କିଛି ପରିଚୟ । ଏ ଯାଏଁ ଆମେ ଯାହାସବୁ ଆଲୋଚନା କରିଛେ, ସେଥିରୁ ମନେ ହେଉଥିବ, ବିଭିନ୍ନ ଶ୍ରେଣୀର ବଣମଣିଷ ଓ ମଣିଷ କେବଳ ଆଫ୍ରିକା ବା ୟୁରୋପରେ ହିଁ ଜନ୍ମ ହେଉଥିଲେ । କିନ୍ତୁ ଏହା ଠିକ୍ ନୁହେଁ । ଏମାନେ ଭାରତ, ୟୁରୋପ, ଏସିଆ, ଆଫ୍ରିକା ଆଦି ବିଭିନ୍ନ ଜାଗାରେ ରହିଥିବେ । ପ୍ରାୟ କୋଡ଼ିଏ ହଜାର ବର୍ଷ ତଳେ ଏସିଆରୁ ଏମାନେ ଅଷ୍ଟ୍ରେଲିଆ, ଆମେରିକା ଆଦି ଦେଶକୁ ଯାଇଥିବେ । ଆଧୁନିକ ମଣିଷ ଅନେକ ଡ଼େରିରେ ପୃଥିବୀରେ ଉଧାଇଛି ।

ଆମେ ଏ ଯାଏଁ ପ୍ରାଚୀନ ପ୍ରସ୍ତର ଯୁଗ ବିଷୟରେ ଆଲୋଚନା କରିଛେ । ମଣିଷ ପଥରକୁ ବିଭିନ୍ନ ହତିଆର ରୂପେ ବ୍ୟବହାର କରୁଥିଲା । ଗଛରୁ ଫଳ ଝଡ଼ାଇବା, ଟାଣ ଫଳକୁ ବାଡ଼େଇ ଭାଙ୍ଗିବା, ହିଂସ୍ର ଜୀବଙ୍କୁ ଅଡ଼ାଇବା, ଶୀକାର କରିବା ଆଦି କାମରେ ଏହାକୁ ଲଗାଉଥିଲା । ପରେ ସେ ପଥରକୁ ଗୋଳିଆ କରି ଧାରୁଆ ଅସ୍ତ୍ର ସବୁ ବନାଇଲା । ଏହାକୁ ଛୁରୀ, କାତି ଆଦି ରୂପେ ବ୍ୟବହାର କଲା । ଏହାକୁ ଆହୁରି ଉନ୍ନତ କରି ସେ ଟାଙ୍ଗିଆ, ବଡ଼ ଛୁରୀ ଆଦି ବନାଇଲା । ଏହାକୁ ତା'ର ନୂତନ ପ୍ରସ୍ତର ଯୁଗ କୁହାଯାଏ । ବିଭିନ୍ନ ହାତ ହତିଆର ସହ ଆଗ ଅପେକ୍ଷା ତା' ବଳ ଯଥେଷ୍ଟ ବଢ଼ି ଯାଇଥିଲା ।

ନିଆଁର ବ୍ୟବହାର ତାକୁ ଅନେକ ସାହାଯ୍ୟ କଲା । ଆଲୁଅ, ଉତ୍ତାପ ସାଙ୍ଗକୁ ଏହା ତାକୁ ସୁରକ୍ଷା ବି ଯୋଗାଇଲା । ସେମାନେ ଖାଦ୍ୟକୁ ରାନ୍ଧିବା ପାଇଁ ମାଟିରେ ହାଣ୍ଡି ଭଳି ବିବିଧ ପାତ୍ର ଗଢ଼ିଲେ । ଜୀବଜନ୍ତୁଙ୍କ ଚମଡ଼ା ଗଛର ବକଳ ଆଦିକୁ ଦେହରେ ଗୁଡ଼ାଇଲେ । ଏହା ତାକୁ ସୁନ୍ଦର ଦିଶିବା ସାଙ୍ଗକୁ ଥଣ୍ଡା, ଖରା, ବର୍ଷାରୁ ବି ଆରାମ ଦେଲା । ସେମାନେ ଧନୁ, ଶର, ବାଟୁଳି ଖଡ଼୍ଗ ଆଦି ବ୍ୟବହାର କରିବା ଶିଖିଲେ । ଏ ସବୁ ଶିଖିବା ପାଇଁ କେତେ ଲକ୍ଷ ବର୍ଷ ଲାଗି ଯାଇଥିଲା । କାରଣ ଏସବୁକୁ ମଣିଷ କାହାଠାରୁ ଶିଖି ନ ଥିଲା । ସେ ବିଭିନ୍ନ କାମ କରୁ କରୁ ଏ ସବୁ ଯନ୍ତ୍ରପାତି ଓ ଜ୍ଞାନ ଲୋଡ଼ା ହୋଇଥିଲା । ମୁଣ୍ଡ ଓ ହାତର ଗଭୀର ଚେଷ୍ଟାରୁ ଏସବୁ ହତିଆର ସୃଷ୍ଟି ହୋଇଥିଲା ।

ଏ ସବୁ ପରଖ ସହିତ ମଣିଷ ତା' ଚାରିପାଖର ପ୍ରକୃତି ଓ ଜୀବନଧାରାକୁ ବି ବୁଝି ଚାଲିଥିଲା । ଯେଉଁ ମଣିଷ ଦିନେ ବର୍ଷା କି ବିଜୁଳି ଦେଖି ଡ଼ରରେ ଗୁମ୍ଫାରେ ଲୁଚି ଯାଉଥିଲା, ସେ କ୍ରମେ ପ୍ରକୃତିର ବିଭିନ୍ନ ଗୂଢ ରହସ୍ୟ, ଯଥା : ଋତୁ ବଦଳ, ପାଣି ପାଗ, ଦିନରାତି, ଗଛଲତା, ପଶୁପକ୍ଷୀ ଆଦିଙ୍କ ଜୀବନଧାରାକୁ ବୁଝିବାକୁ ଚେଷ୍ଟା କଲା । ଏହା ତା'ର ଜ୍ଞାନ ବିଜ୍ଞାନର ବିକାଶର ପ୍ରଥମ ସୋପାନ ହେଲା । ଫଳମୂଳ ଖୋଜି ଖାଉଥିବାରୁ ସେ ବିଭିନ୍ନ ଗଛ, ଏହାର ଫଳର ଗୁଣ, ଫଳ ଧରିବାର ସମୟ, ଗଛଟି ଉଠିବା ଜାଗା ଆଦିକୁ ଜାଣିଲା । ଏଥିରୁ ଆରମ୍ଭ ହେଲା ତା'ର ଗଛ ବିଷୟରେ ଜ୍ଞାନ ବା ଉଦ୍ଭିଦ ବିଜ୍ଞାନ ।

ଶିକାର କଲାବେଳେ ସେ ଶର ବା ଅନ୍ୟ ଧାରୁଆ ଅସ୍ତ୍ର ଫିଙ୍ଗିବାର କୌଶଳ ବାହାର କଲା । ପଶୁର କେଉଁଠିକି ମାରିବ, କେତେ ବେଗରେ, କେଉଁ ଦିଗରେ ଓ କିପରି ମାରିବ ଆଦିକୁ ବୁଝିଲା । ଏଥିରୁ ତାର ଫିଙ୍ଗିବା ଜ୍ଞାନ ବା ଉତ୍‌କ୍ଷେପଣ ବିଜ୍ଞାନ ଆରମ୍ଭ ହେଲା । ପଶୁକୁ କାଟି ସେ ତା' ଚମଡ଼ା ବାହାର କଲା । ଦେହ ଭିତରେ କେଉଁଠି କ'ଣ ଅଛି, କେଉଁଠି କ'ଣ କାମ କରୁଛି, ଏ ସବୁକୁ ଜାଣିଲା । ନିଜ ଦେହରେ ବି ଏମିତି ଥିବ ବୋଲି ଭାବିଲା । ଏ ସବୁକୁ ନେଇ ବଢିଲା ତା'ର ପ୍ରାଣୀ ବିଜ୍ଞାନ ଓ ଶରୀର ବିଜ୍ଞାନ ।

ବିଭିନ୍ନ ହତିଆର ତିଆରି କରିବା ପାଇଁ ସେ ବାଛି ବାଛି ଟାଣୁଆ ପଥର ଆଣିଲା । ତାକୁ ଘଷି, କାଟି ଧାରୁଆ କଲା । ଏହି ପ୍ରକ୍ରିୟାରେ ସେ ବିଭିନ୍ନ ପଥରର ଗୁଣ, ଧର୍ମକୁ ଜାଣିଲା । ଏହିପରି ତା'ର ରସାୟନ ବିଜ୍ଞାନ, ପଦାର୍ଥ ବିଜ୍ଞାନ, ଜଳବାୟୁ ବିଜ୍ଞାନ ଆଦି ବିବିଧ ଜ୍ଞାନ ବଢ଼ିଲା ।

ଏଥର ମଣିଷ ପଥର ଛାଡ଼ି ଧାତୁରେ ହତିଆର ତିଆରି କରି ଜାଣିଲା । ଏଗୁଡ଼ିକ ପଥରଠୁଁ ବେଶୀ ଟାଣ ଓ କାମିକା ହୋଇ ପାରୁଥିଲା । ପ୍ରଥମରେ ସେ ତମ୍ବା ଓ ପିତଳ ଧାତୁ ବ୍ୟବହାର କରୁଥିଲା । ପିତଳର ବହୁଳ ବ୍ୟବହାର ସମୟକୁ **ପିତଳ ଯୁଗ** କୁହାଯାଇଥାଏ । ପିତଳ ଯୁଗର କେତେ ଶହ ବର୍ଷ ପରେ **ଲୌହ ଯୁଗ** ଦେଖାଦେଲା । ବିପୁଳ ଓ ବ୍ୟାପକ ଭାବରେ ଲୁହାର ବିଭିନ୍ନ ହତିଆର ବନାଗଲା ।

କୃଷି ତା' ଜୀବନରେ ଏକ ବଡ଼ ପରିବର୍ତ୍ତନ ଆଣିଦେଲା । ଆଗର ଶିକାରୀ ଜୀବନ ତା'ର ବଦଳିଗଲା । ଆଗ ଭୋକ ବେଳେ ଶିକାର କରି ବା ଫଳମୂଳ ଆଣି ସେ ପେଟ ଭରି ଦେଉଥିଲା । କିନ୍ତୁ ଏବେ ସେ ଜମି ଚଷି, ମଞ୍ଜି ବୁଣି ତା'ର ଯତ୍ନ ନେଲା । ଫସଲ ପାଚିଲେ ନାଚି, ଗାଇ ସେ ଅମଳ କଲା ଓ ସ୍ଥିରତାର ଜୀବନ ବିତାଇଲା । ପାଣିପାଗ, ଋତୁ, ଚାଷର ପ୍ରଣାଳୀ ଆଦି ବିଷୟରେ ଧାରଣା, ଫସଲ ଅମଳ, ଫସଲ ସାଇତା, ରୋଷେଇ ଆଦି ସବୁଥିରେ ଉନ୍ନତି ହେଲା । ଗୋଟିଏ ପୀଢୀର ଲୋକ ଯାହା ନୂଆ ଶିଖିଲେ, ତାହା ତା' ପର ପୀଢୀକୁ ଯଥେଷ୍ଟ ସାହାଯ୍ୟ କଲା । ଭଲ ଚାଷ ପାଇଁ

ମଣିଷ ନଈକୂଳିଆ ଇଲାକାକୁ ଅଧିକ ଉପଯୋଗୀ ମଣିଲା । ଦଳ ଦଳ ହୋଇ ସେ ନଈକୂଳରେ ବସତି ଗଢ଼ିଲା । ଶିକାର ବଦଳରେ ସେ ଚାଷ କାମରେ ବେଶୀ ମଜା ପାଇଲା । କିନ୍ତୁ ଆରପଟେ ଏହାକୁ " ମଣିଷ ଜାତିର ଏକ ଅବନତି " ବୋଲି ବି କୁହାଗଲା । ଯେଉଁ ମଣିଷ ଶିକାର କାମରେ ଯଥେଷ୍ଟ ଉଦ୍ଦୀପନା ଓ ମନୋରଞ୍ଜନ ପାଉଥିଲା ଏବଂ ଶିକାର ପରେ ଭୋଜି, ମଉଜ କରୁଥିଲା , ତାକୁ ଆଜି ଚୁପ୍‌ଚାପ୍ ଅନେକ ଦିନ ଯାଏଁ ଫସଲ ଅପେକ୍ଷାରେ ବସିବାକୁ ପଡିଲା । କିନ୍ତୁ ସେ ଯାହା ହେଉ ନା କାହିଁକି, ଏହା ମଣିଷ ଜୀବନରେ ଅଧିକ ସ୍ଥିରତା ଆଣି ଦେଇପାରିଲା । ସେ ନିଜର ଅବସର ସମୟରେ ବିଭିନ୍ନ ରଚନାତ୍ମକ କାମଦାମ କରିପାରିଲା । ଫଳରେ କଳା, ସାଜସଜା, ସଂସ୍କୃତି, ଚାଲିଚଳଣୀ, ଶ୍ରମବଣ୍ଟନ ଆଦି କାମରେ ସେ ସମୟ ଦେଇପାରିଲା ଓ ଉନ୍ନତି କଲା । କିନ୍ତୁ ସେ ସମୟର ମଣିଷ ସବୁକଥା ବା ପ୍ରଶ୍ନର ସଠିକ୍ ଧାରଣା ପାଇବା ସମ୍ଭବପର ନଥିଲା । ତେଣୁ କେତେକ ସମୟରେ ସେ ବିନା ପ୍ରମାଣ ବା କମ୍ ବୁଝାମଣାରେ ବି ମନରୁ ଅନେକ ବ୍ୟାଖ୍ୟା କରି ପକାଉଥିଲା । ଏଗୁଡ଼ିକ ଧୀରେ ଧୀରେ ଅନ୍ଧବିଶ୍ୱାସ ରୂପେ ସମାଜରେ ନିଜ ଜାଗା ମାଡ଼ି ବସିଲା ।

ଚାଷ କାମ ସହିତ ମାପଚୁପ ବି ଲୋଡ଼ା ହେଲା । ଜମିର ମାପଚୁପ, ଅମଳ ହୋଇଥିବା ଫସଲ, ଗାଈ, ଘୋଡ଼ାଙ୍କ ସଂଖ୍ୟା, ଚାଷ ପାଇଁ ସଠିକ୍ ସମୟ ଆଦି ଜାଣିବା ପାଇଁ ତାକୁ ହିସାବ ରଖିବାକୁ ପଡ଼ିଲା । ଏହି ଧାରାରେ ମଣିଷର ' ଗଣିତ' ବି ଆରମ୍ଭ ହୋଇଗଲା । ଜ୍ୟାମିତି କୌଶଳ ବାହାର କରି ସେମାନେ ମାପଚୁପ କରି ପାରିଲେ । ବିଭିନ୍ନ ଜାଗାରେ ବନ୍ଧ ବାନ୍ଧି ସେମାନେ ଚାଷ ଜମିକୁ ପାଣି ଯୋଗାଇଲେ । ପକ୍କା ଘର ତିଆରି କରିବା ଶିଖିଲେ । 'ଚକ' ଉଦ୍ଭାବନ କଲେ । ଚକ ମଣିଷ ପାଇଁ ଏକ ବୈପ୍ଳବିକ ବିକାଶର ବାଟ ଖୋଲିଦେଲା । ସେମାନେ ଏହାକୁ ଲଗାଇ ଶଗଡ଼ , ରଥ ଆଦି ବନାଇଲେ । କ୍ରମେ ସେମାନେ ବଡ଼ ବଡ଼ ନାଆ ତିଆରି କଲେ ଓ ନଦୀରେ ଯାତାୟତ କଲେ ।

ମାଟିରେ ପାତ୍ର ବନାଇବା ମଣିଷର ଆଉ ଏକ ବଡ଼ କାମ ଥିଲା । କୁମ୍ଭାରଚକ ଦ୍ୱାରା ମାଟିର ପାତ୍ର ଗଢ଼ିବା ଡ଼େରିରେ ଆରମ୍ଭ ହେଇଥିଲା । ଆରମ୍ଭରେ ସେମାନେ ଚିକିଟା ମାଟିକୁ ହାତରେ ବାଗେଇ ମାଟି ମାତ୍ର ସବୁ ବନାଉଥିଲେ । ଏ ସବୁରେ ସେମାନେ ଶସ୍ୟକୁ ସାଇତି ରଖିପାରିଲେ । ଏଥିରେ ପାଣିକୁ ଧରି ରଖିହେଲା । ପରେ ସେମାନେ ଏହାକୁ ରୋଷେଇ କାମରେ ବି ଲଗାଇଲେ । ହାଣ୍ଡିରେ ରୋଷେଇ କରିବା ବେଳେ ସେମାନେ ରନ୍ଧା ଖାଦ୍ୟର ସୁଆଦ ଚାଖିଲେ । ନୂଆ ନୂଆ ସୁଆଦ ପାଇଁ ସେମାନେ କେତେ ରକମର ପରଖ କରିଥିବେ । କିଏ ହୁଏତ ବାସି ଖଟା ତୋରାଣୀରୁ ହାଣ୍ଡିଆର ମଜା ଚାଖିଥିବ । କାମଟିରେ ଅଧିକ ଫଳ ପାଇବା ପାଇଁ ପରଖ ଚଳାଉ ଚଳାଉ କିଏ ପାତକ ପ୍ରଣାଳୀର ସୁବିଧାକୁ ଚିହ୍ନିଥିବ । ଏହି ପ୍ରଣାଳୀରେ ସେ ବିଭିନ୍ନ ମଦ ବନାଇବା ଶିଖିଗଲା । ରସାୟନ ବିଜ୍ଞାନରେ ଏହି ପାତନ ପ୍ରଣାଳୀ ଦ୍ୱାରା ଅନେକ ଗୁରୁତ୍ୱପୂର୍ଣ୍ଣ କାମ

ହୋଇପାରିଥାଏ । ହୁଏତ ଏହି ପ୍ରଣାଳୀଟିର ଆରମ୍ଭ ସେମାନଙ୍କଠାରୁ ହିଁ ହେଇଥିବ । ଏବେ ବି ଆଦିବାସୀମାନେ ଏହି ପ୍ରାଚୀନ ଦେଶୀ ଢ଼ାଞ୍ଚାରେ ହିଁ ହାଣ୍ଡିଆ ବନାଉଛନ୍ତି ।

ମଣିଷର ଜ୍ଞାନ ବିଜ୍ଞାନ ଲଗାତାର ବଢ଼ି ଚାଲିଥିଲା । ଅନେକ ତଥ୍ୟକୁ ମନେ ରଖିବାରେ ଅସୁବିଧା ଥିଲା । ତେଣୁ ସେଗୁଡ଼ିକୁ ଟିପି ରଖିବା ଦରକାର ହେଲା । ବିଭିନ୍ନ ଠାର ସଙ୍କେତ ଦ୍ୱାରା ସେମାନେ ମାଟିର ପଟା ଉପରେ ବିଭିନ୍ନ ତଥ୍ୟକୁ ଟିପି ରଖୁଥିଲେ । ଏହି ଧାରାରେ ତାଙ୍କର ଲିପିର ବିକାଶ ହେଇଥିବ । ଏହି ଲେଖାଗୁଡ଼ିକୁ ଅନେକ ଦିନ ଯାଏଁ ସାଇତି ରଖି ହେଉଥିଲା । ଏହାର ଅନେକ ନଜିର ମହେଞ୍ଜୋଦାରୋ ଓ ହରପ୍ପାରୁ ମିଳିପାରିଛି । ଆମେ ତାଙ୍କର ଭାଷା ଓ ସଙ୍କେତ ସହ ପରିଚିତ ନୁହଁତି । ତେଣୁ ଏହାକୁ ବୁଝି ପାରୁନାହେଁ ।

କାମ ଓ ଉତ୍ପାଦନ ବଢ଼ିବା ସାଙ୍ଗକୁ ବିଭିନ୍ନ ଦଳ ଭିତରେ ବଣ୍ଟାକୁଣ୍ଟା ଓ ବିନିମୟ ବି ବଢ଼ିଲା । ଏଥିପାଇଁ ଅନୁପାତ ଓ ହିସାବ ଆଦି ଜାଣିବା ଦରକାର ହେଲା । ଏସବୁ ହିସାବ ରଖିବା ପାଇଁ କିଏ କେଉଁ ଉପାୟ ବାହାର କରିଥିଲେ । କିଏ ଗାତରେ ଗୋଡ଼ି ପକାଇ ହିସାବ ରଖୁଥିଲେ । ଦକ୍ଷିଣ ଆମେରିକାରେ ଇଙ୍କାମାନେ ଦଉଡ଼ିରେ ଗଣ୍ଠି ପକାଇ ବା କ୍ୱିପୁ ପଦ୍ଧତିରେ ହିସାବ ରଖୁଥିଲେ ।

ମଣିଷର ବିକାଶ ସହିତ କେତେକ ସାମାଜିକ ଅସୁବିଧା କାମ ବି ଏଙ୍କା ତାଳରେ ବଢୁଥିଲା । ନାନା ଅନ୍ଧବିଶ୍ୱାସ ଚେର ଧରିବା ଏଥିରୁ ଗୋଟିଏ । ଆଉ ଗୋଟିଏ ଥିଲା ଶୋଷଣ ମନୋଭାବ । ଯେଉଁମାନେ ସମାଜରେ ବଳୁଆ ଥିଲେ ସେମାନେ ଦୁର୍ବଳମାନଙ୍କୁ ହଇରାଣ କରୁଥିଲେ । କ୍ଷମତା ଓ ଧନ ପାଇଁ ବିଭିନ୍ନ ଦଳ ମଧ୍ୟରେ ଝଗଡ଼ା ହେଉଥିଲା । ହାରିବା ଦଳଟିକୁ ସେମାନେ ବେଳେବେଳେ ମାରି ଖାଇ ଯାଉଥିଲେ ବା ବନ୍ଦୀ କରି ନେଇ ଯାଉଥିଲେ । ତାଙ୍କୁ ସେମାନେ ଦାସ ( ଚାକର) ରୂପେ ଅନେକ କଠିନ କାମରେ ଲଗାଉଥିଲେ । ଜମି ଚାଷ କରିବା, ଘରେ କାମ କରିବା ଠାରୁ ଘର ତିଆରି ଆଦିରେ ତାଙ୍କୁ ଅନେକ ଖଟଣି ପଡୁଥିଲା । ତାଙ୍କର ସ୍ୱାଧୀନତା ବା ଆନନ୍ଦ ବୋଲି କିଛି ନଥିଲା । ଏପରିକି ଚୀନର ବିଶାଳ କାନ୍ଥ, ମିଶରର ପିରାମିଡ୍ ଆଦି ପୃଥିବୀର ବିଖ୍ୟାତ କାମଗୁଡ଼ିକ ପଛରେ ଏମାନଙ୍କର ହିଁ ଲହୁ, ଲୁହ ଲାଗିଥିଲା । କିନ୍ତୁ ଏଥିପାଇଁ ସେମାନଙ୍କର କୌଣସି ନାଁ ରହୁ ନଥିଲା ।

କିନ୍ତୁ ଆରପଟେ ସମାଜ ଓ ସଭ୍ୟତା ବଢ଼ି ଚାଲିଥିଲା । କ୍ରମେ ସେମାନେ ଚାଷ ଉପରେ ପୂର୍ଣତଃ ନିର୍ଭର କରିବାରେ ଲାଗିଲେ । ନଈକୂଳରେ ଚାଷ ପାଇଁ ପାଣି, ଉର୍ବର ମାଟି ସାଙ୍ଗକୁ ପରିବହନର ସୁବିଧା ବି ଥିଲା । ତେଣୁ ବଡ଼, ବଡ଼ ନଦୀ ଅବବାହିକାରେ ସେମାନେ ଦଳ ଦଳ ହୋଇ ରହିବାକୁ ଆରମ୍ଭ କଲେ । ପୃଥିବୀର ଚାରିଟି ବଡ଼ ନଦୀ

କୂଳରେ ବଡ଼ ବଡ଼ ସଭ୍ୟତା ସବୁ ଗଢ଼ି ଉଠିଥିଲା । ସିନ୍ଧୁ ନଦୀ କୂଳରେ ଭାରତର **ସିନ୍ଧୁ ସଭ୍ୟତାର** ନମୂନା ଆମେ ମହେଞ୍ଜୋଦାରୋ ଓ ହରପ୍ପାରେ ଦେଖିବାକୁ ପାଉଛେ । ଏହା ପ୍ରାୟ ୫ ହଜାର ବର୍ଷ ପୁରୁଣା । ଏଠାରେ ମଣିଷର ଜୀବନଧାରା ଯଥେଷ୍ଟ ଉନ୍ନତ ଥିଲା । ଏହି ଦୁଇ ବିଶାଳ ନଗରୀ ଛଡ଼ା ଏଠାରେ ଅନେକ ଉନ୍ନତ ସହର, ଗାଁ ଗଢ଼ି ଉଠିଥିଲା । ଆମର ପାଠ ବହିରେ ଆମେ ଏ ସବୁ ବିଷୟରେ ଅନେକ କଥା ପଢ଼ିବାକୁ ପାଉଛେ ।

ମିଶରର ନୀଳ ନଦୀ କୂଳରେ **ମିଶର ସଭ୍ୟତା** ବି ବେଶ୍ ପୁରୁଣା - ଖ୍ରୀଷ୍ଟପୂର୍ବ ପ୍ରାୟ ୪୦୦୦ ସମୟର । ଏଠାରେ ଗଢ଼ାଯାଇଥିବା ପିରାମିଡ୍‌ଗୁଡ଼ିକ ଏଠାକାର ବିକାଶର ମୂକସାକ୍ଷୀ । ୟୁରୋପର ଟାଇଗ୍ରୀସ ଓ ଇଉଫ୍ରେଟିସ୍ ନଦୀ କୂଳରେ ଉଧେଇଥିଲା **ବେବିଲୋନ୍ ସଭ୍ୟତା** । ଏବେ ସେଠାରେ ଅନେକ ବଡ଼ ବଡ଼ ସୌଧର ଧ୍ୱଂସାବଶେଷ ଦେଖିବାକୁ ମିଳୁଛି । ସେମାନେ ବି ଯଥେଷ୍ଟ ଉନ୍ନତ କରିଥିଲେ । ଚୀନ୍‌ର ହୋୟାଙ୍ଗ୍-ହୋ ନଦୀ କୂଳରେ **ଚୀନ ସଭ୍ୟତା** ପଛରେ ଗଢ଼ିଉଠିଥିଲା । କିନ୍ତୁ ଏହା ବି ବେଶ୍ ଉନ୍ନତି ଥିଲା । ଚୀନ୍‌ର ବିଖ୍ୟାତ ବିଶାଳ କାନ୍ଥଟି ସେ ସମୟର । ଏହାର ଆକାର ଓ ମାନରୁ ଚୀନ ସଭ୍ୟତାର ବିକାଶର ସୂଚନା ମିଳେ । ମଣିଷ ସମାଜ ପାଇଁ ଏହି ଚାରିଟି ପ୍ରାଚୀନ ସଭ୍ୟତାର ଅବଦାନ ଯଥେଷ୍ଟ ବେଶୀ ।

ବିଜ୍ଞାନ ସହ ଦର୍ଶନ ଶାସ୍ତ୍ର ବି ଯଥେଷ୍ଟ ଆଗେଇ ପାରିଥିଲା । ଭାରତର ଆର୍ଯ୍ୟଭଟ, ବରାହମିହିର, ବ୍ରହ୍ମଗୁପ୍ତ, ଭାସ୍କର ଆଦି ପଣ୍ଡିତମାନେ ଆକାଶ ବିଜ୍ଞାନ ଓ ଗଣିତରେ ଅନେକ ଆଗୁଆ କାମ କରିଥିଲେ । ଚରକ, ଶୁଶ୍ରୁତ ଆଦି ଭେଷଜ ବିଜ୍ଞାନରେ ଅନେକ ମୌଳିକ କାମ କରିଥିଲେ । ଶୁଶ୍ରୁତଙ୍କ ବିଭିନ୍ନ ଯନ୍ତ୍ରପାତିରୁ ଜଣାପଡ଼େ ଯେ, ସେ କାଳରେ ବି ସେମାନେ ପ୍ଲାଷ୍ଟିକ୍ ସର୍ଜେରୀ ପରି ଅତି ନିଖୁଣ କାମ କରିପାରୁଥିଲେ । ଗାର୍ଗୀ, ଲୀଳାବତୀ ଆଦି ପଣ୍ଡିତା ଗଣିତରେ ପାରଦର୍ଶୀ ଥିଲେ । ବୁଦ୍ଧଦେବଙ୍କ ଉଦ୍ୟମରେ ପ୍ରତିଷ୍ଠିତ ବିଖ୍ୟାତ ନାଳନ୍ଦା ବିଶ୍ୱବିଦ୍ୟାଳୟରେ ଶିକ୍ଷା ପାଇବା ପାଇଁ ଦେଶ ବିଦେଶରୁ ଅନେକ ଶିକ୍ଷାର୍ଥୀ ଆସୁଥିଲେ । ଦିଲ୍ଲୀରେ ଥିବା କେତେ ହଜାର ବର୍ଷ ପୁରୁଣା ଲୌହସ୍ତମ୍ଭ (କଳଙ୍କ ଧରେ ନାହିଁ) ଓ ରାଜସ୍ଥାନର ଜନ୍ତର ମନ୍ତର ଆଦି ବିଭିନ୍ନ ଆଗୁଆ ଗବେଷଣାର ନମୂନା । ଇତିହାସରୁ ଜଣାପଡ଼େ ଯେ, ଭାରତୀୟ ବିଦ୍ୟା ଅନେକାଂଶରେ ଆରବୀୟ ଭାଷାକୁ ଅନୂଦିତ ହୋଇଥିଲା । ପରେ ସେଥିରୁ ଏହା ଗ୍ରୀକ୍ ଭାଷାକୁ ବି ଅନୁବାଦ କରାଯାଇଥିଲା ।

ଗ୍ରୀକ୍ ସଭ୍ୟତାରେ ଅନେକ ବିଖ୍ୟାତ ଦାର୍ଶନିକଙ୍କର ଅବଦାନ ଥିଲା । ସକ୍ରେଟିସ୍, ପ୍ଲାଟୋ, ପିଥାଗୋରସ୍, ଆରିଷ୍ଟୋଟଲ୍, ଟଲେମୀ, ଆର୍କମିଡ଼ିସ୍ ଆଦି ଦାର୍ଶନିକଙ୍କ ଦର୍ଶନଶାସ୍ତ୍ର ବିଷୟରେ ଆମ ପାଠ ବହିଗୁଡ଼ିକରେ ଆଲୋଚନା କରାଯାଇଛି ।

୪୦୦ ରୁ ୮୦୦ ଖ୍ରୀଷ୍ଟାବ୍ଦ ଯାଏଁ ଆରବୀୟ ବିଜ୍ଞାନ ବେଶ୍ ନାଁ କରିଥିଲା । ବିଭିନ୍ନ ସଭ୍ୟତାରୁ ଜ୍ଞାନକୁ ଆରବୀୟ ଭାଷାରେ ଅନୁବାଦ କରାଯାଇଥିଲା । ବିଶେଷ କରି ଆଲୋକ ବିଜ୍ଞାନ, ଭେଷଜ ବିଜ୍ଞାନ ଓ ଆକାଶ ବିଜ୍ଞାନ କ୍ଷେତ୍ରରେ ସେମାନେ ବେଶ୍ ଉନ୍ନତି କରିଥିଲେ । ପ୍ରାୟ ୭ମ ଶତାବ୍ଦୀ ବେଳକୁ ଆରବ ସଭ୍ୟତା ବିଜ୍ଞାନୀ ପରଖ ଓ ଗତିବିଧିର ଏକ ପେଣ୍ଠସ୍ଥଳୀ ବନିଯାଇଥିଲା । ଅଲ୍‌କାନ୍‌ଓ୍ୱାରିସ୍ ଓ ଆଭିସେନା ଆଦି ପଣ୍ଡିତ ଅନୁବାଦକମାନେ ଆରବ ବିଜ୍ଞାନକୁ ସମୃଦ୍ଧ କରିପାରିଥିଲେ । ଏହାଛଡ଼ା ଖ୍ରୀଷ୍ଟପୂର୍ବ ୩୦୦ ବେଳକୁ ଆମେରିକାର ଉପକୂଳରେ ମାୟାନ୍ ସଭ୍ୟତା ଗଢ଼ି ଉଠିଥିଲା । ମାଟିତଳୁ ଏବେ ଏହି ଅଞ୍ଚଳରୁ ଅନେକ ଭଙ୍ଗା ଅଟ୍ଟାଳିକା ଓ ସହରର ଅଂଶ ଦେଖିବାକୁ ମିଳୁଛି । ଆଫ୍ରିକାର ଇଷ୍ଟର୍ ଦ୍ୱୀପ ଏପରି ଆଉ ଏକ ନମୁନା । ଏଠାରେ ଭୂମି ଉପରେ ପଥରର ଅନେକ ବିଶାଳକାୟ ମୁଣ୍ଡ ସବୁ ଠିଆ ହୋଇଛି । ଏଗୁଡ଼ିକ ପ୍ରକୃତରେ କାହାର ସେ ବିଷୟରେ ବିଶେଷ କିଛି ଜଣାନାହିଁ ।

ଗତ ଦୁଇ ହଜାର ବର୍ଷ ଭିତରେ ମଣିଷ ଅନେକ ଦୂର ଆଗେଇ ପାରିଛି । ବିଜ୍ଞାନ, ସଂସ୍କୃତି, ସାହିତ୍ୟ, କଳା, ଦର୍ଶନ, କାରିଗରୀ, ଶିଳ୍ପ ଆଦି ସବୁ ବିଦ୍ୟାରେ ଅଭୂତପୂର୍ବ ବିକାଶ ଘଟିଛି । ବିଶେଷ କରି ଗତ ୨୦୦ ବର୍ଷ ଭିତରେ ବିଜ୍ଞାନ ଓ କାରିଗରୀ ବୈପ୍ଳବିକ ପରିବର୍ତ୍ତନ ଆଣିଦେଇଛି ।

ଏ ଦିଗରେ କେତୋଟି ଘଟଣାର ଅବଦାନ ବେଶ୍ ପ୍ରଭାବଶାଳୀ ଥିଲା । ଜଳ ଓ ସ୍ଥଳରେ ଯୋଗାଯୋଗର ସୁବିଧା ବଢ଼ିବା ଫଳରେ ବିଭିନ୍ନ ସଭ୍ୟତା ମଧ୍ୟରେ ସମ୍ପର୍କ ଓ ବିନିମୟ ବଢ଼ିଲା । ଭାସ୍କୋଡ଼ାଗାମା, କଲମ୍ବସ୍ ଆଦି ଦୁଃସାହସୀ ନାବିକଙ୍କ ଦ୍ୱାରା ନୂଆ ନୂଆ ଜଳପଥ ଓ ନୂଆ ରାଇଜ ଆବିଷ୍କୃତ ହେଲା । ବଣିକମାନେ ଅନ୍ୟ ଦେଶରୁ ନୂଆ ଜିନିଷ ଆଣି ନିଜ ଦେଶରେ ବିକିଲେ । ଆମ ରାଜ୍ୟ ଓଡ଼ିଶାର ସାଧବ ପୁଅମାନେ ଜାଭା, ସୁମାତ୍ରା, ବାଲି, ବୋର୍ଣ୍ଣିଓ ଆଦି ଦ୍ୱୀପକୁ ଯିବା ବି ଏହାର ଏକ ଉଦାହରଣ । ସେପରି ପର୍ତ୍ତୁଗୀଜ୍, ଡ଼ଚ୍, ଫରାସୀ ଓ ଇଂରେଜମାନେ ବି ଆମ ଦେଶକୁ ଆସିଲେ । ଏହାର ଫଳାଫଳ କ'ଣ ହେଲା ଆମେ ଜାଣିଛେ ।

ଯୋଗାଯୋଗର ବିକାଶ ସହ ଶିଳ୍ପ ଓ ବ୍ୟବସାୟ ବି ବଢ଼ିଲା । କୃଷିର ଉନ୍ନତି ପାଇଁ ନୂଆ ନୂଆ ଯନ୍ତ୍ରପାତି ଓ ଉପକରଣ ଲୋଡ଼ା ହେଲା । ଲୁଗାକଳ, ଛପାକଳ, ଲୁହା କାରଖାନା ଆଦି ବନାଗଲା ।

ଛପାକଳ ସମାଜରେ ଏକ ନୂଆ ପ୍ରଭାବ ପକାଇଲା । ପ୍ରଥମେ ଏଥିରେ ବାଇବେଲ୍ ଛପା ଯାଇ ଧର୍ମର ପ୍ରଚାର ବଢ଼ା ଯାଇଥିଲା । ଲୋକେ ପଢ଼ିବା ଓ ପ୍ରଶ୍ନ ଉଠାଇବା ବଢ଼ିପାରିଲା । କାଳକ୍ରମେ ଏହା ଲୋକଙ୍କ ପାଖରେ ବିଭିନ୍ନ ସାମାଜିକ ଖବର

ପହଞ୍ଚାଇବାରେ ଏକ ମାଧ୍ୟମ ହୋଇପାରିଲା । ୧୮ଶ ଶତାବ୍ଦୀର ଶେଷ ଭାଗରେ ବାଷ୍ପୀୟ ଇଂଜିନ୍‌ର ଆବିଷ୍କାର ଓ ଜଳ, ସ୍ଥଳରେ ଯାନବାହନର ବିକାଶ ଶିଳ୍ପ ବିପ୍ଳବ ଆଣି ଦେଇଥିଲା । ବିଂଶ ଶତାବ୍ଦୀର ଆରମ୍ଭ ବେଳକୁ ମଣିଷ ବିଜ୍ଞାନ ବଳରେ ପ୍ରକୃତିର ଅନେକ ଗୂଢ଼ ରହସ୍ୟକୁ ଖୋଲି ଜାଣି ପାରିଲା । ପୃଥିବୀ ଛଡ଼ା ପୃଥିବୀ ବାହାରର ଗ୍ରହ, ତାରାଙ୍କ ବିଷୟଠୁ ଆରମ୍ଭ କରି ଆଖିକୁ ଦିଶୁ ନଥିବା ଅଣୁ-ଜଗତ ବିଷୟରେ ବି ଜାଣିପାରିଲା । ଜୀବନର ସବୁ ସୃଜନାତ୍ମକ ଦିଗରେ ମଣିଷ ଲଗାତାର ବିକାଶ କରି ଚାଲିଲା । ଆଜିର ଯୁଗରେ ଆମେ ବିକାଶର କେଉଁ ସୋପାନରେ ଅଛେ ତାହା ଜାଣି ପାରୁଛେ । ଯେଉଁ ମଣିଷ ଦିନେ ଜଙ୍ଗଲରେ ବଞ୍ଚିବା ପାଇଁ ସଂଘର୍ଷ କରୁଥିଲା , ସେ ଆଜି ମହାବଳୀ ହୋଇ ନିଜ ଋଚି ମୁତାବକ ପୃଥିବୀ ଓ ଜୀବନକୁ ସଜାଇ ଚାଲିଛି । ନିରେଖି ଚାହିଁଲେ ମଣିଷର ଏହି ଅସରା ଯାତ୍ରା ଓ ବିକାଶ ଆଶ୍ଚର୍ଯ୍ୟମୟ ମନେହୁଏ ।


(ହୋମୋ ସାପିଏନ୍‌ସ)

କିନ୍ତୁ ଏସବୁର ପଛରେ ରହିଛି ମଣିଷର ଦକ୍ଷ ମସ୍ତିଷ୍କ ଓ ବଳିଷ୍ଠ ହାତର ତାଳମେଳ । ସେ ଜୀବନର ପ୍ରତି ମୁହୂର୍ତ୍ତରେ ବଦଳି ଚାଲିଛି । ବିଜ୍ଞାନର ପ୍ରମାଣଭିତ୍ତିକ ଧାରାରେ ସେ ତା ସ୍ୱପ୍ନର ସ୍ୱର୍ଗ ଗଢ଼ିବାରେ ଲାଗିଛି । ଏହି ଆଧୁନିକ ମଣିଷ ହିଁ ଏହି ଆଧୁନିକ ସଭ୍ୟତାର ବିଶ୍ୱକର୍ମା ସାଜିଛି । ଏହାକୁ ଆମେ କହୁଛେ **ହୋମୋ ସାପିଏନ୍‌ସ୍** ବା ଆଧୁନିକ ମଣିଷ । ଏହାର ଆରମ୍ଭ ପ୍ରାୟ ୫ ଲକ୍ଷ ବର୍ଷ ତଳେ । କିନ୍ତୁ ଆଜିର ମଣିଷର ଆରମ୍ଭ ମାତ୍ର ୪୦ ହଜାର ବର୍ଷ ତଳେ । ଏବେ ବି ସେ ବଦଳି ଚାଲିଛି ତା'ର ଶାରୀରିକ ଗଠନ, ଆକାର ଓ ବିଚାରରେ ଏବଂ ବଦଳାଇ ଚାଲିଛି ତା'ର ପ୍ରିୟ କୁନି ଘର (ପୃଥିବୀ) ଟିକୁ ।

## **କାଲିର ମଣିଷ କିପରି ହେବ ?**

ଏହା ଏକ କାଠିକର ପ୍ରଶ୍ନ । କାରଣ ଆମେ ଆଜିର ଅବସ୍ଥାରେ କିପରି ପହଞ୍ଚିଛେ ତାହାର ନିର୍ଦ୍ଦିଷ୍ଟ ଧାରାଟି ଆମକୁ ଜଣାନାହିଁ । ଏଥିପାଇଁ କେତେ ସମୟ ଲାଗିଛି ତାହା ବି ସଠିକ୍ ଭାବରେ ଆମେ ଜାଣି ନାହେଁ । କେବଳ ଜୀବାଶ୍ମଗୁଡ଼ିକୁ ପଢ଼ି ଆମେ ଏପରି ହୋଇ ଥାଇପାରେ ବୋଲି ବିଚାର କରୁଛେ । ଆମେ ଧରୁଛେ, ଅଷ୍ଟ୍ରାଲୋପିଥେକସ୍‌ରୁ

ବଦଳି ହୋମୋସାପିଏନ୍‌ସ୍ ଅବସ୍ଥାରେ ପହଞ୍ଚିବା ପାଇଁ ପ୍ରାୟ ୧୦ ଲକ୍ଷ ବର୍ଷ ଲାଗି ଯାଇଛି । ଏହା ପ୍ରାୟ ୧୫ ହଜାର ବଣମଣିଷଙ୍କ ଜୀବନକାଳ ସହ ସମାନ । ଏହାକୁ ପ୍ରାୟ ୪୦ ହଜାରଟି ବଂଶ ବୋଲି ଧରା ଯାଇପାରେ । ଜୀବ ବିବର୍ତ୍ତନର ହିସାବରେ ଏହା ଏକ ସୂକ୍ଷ୍ମ କ୍ଷଣ ମାତ୍ର । କିନ୍ତୁ ପ୍ରତି ମୁହୂର୍ତ୍ତରେ ପ୍ରକୃତି ଓ ଜୀବନର ରୂପ ବଦଳି ଚାଲିଛି ।

ଆଜିର ମଣିଷ ଯେ କାଲିକି ଏକ ନୂଆ ରୂପ ନେବ ଓ ନୂଆ ପ୍ରାଣୀ ସୃଷ୍ଟି କରିବ ତାହା କହିବା ବେଶ୍ କାଠିକର କଥା । ହୋମୋସାପିଏନ୍‌ସ୍ ଏ ଯାଏଁ ବିଶେଷ କିଛି ବଦଳିନାହିଁ କି ବଦଳିବାର ସୂଚନା ବି ମିଳୁନାହିଁ । ଏହାର ଦୁଇଟି କାରଣ ଅଛି । (୧) ମଣିଷମାନେ ପରିବେଶ ସହ ଚମତ୍କାର ଭାବେ ଖାପ ଖୁଆଇ ଚାଲିଛନ୍ତି । ବିଭିନ୍ନ ବାସସ୍ଥାନ, ଜଳବାୟୁ, ଉତ୍ତାପ ଆଦିରେ ଅଭ୍ୟସ୍ତ ହୋଇ ଚଳି ଯାଇ ପାରୁଛନ୍ତି । (୨) ଏମାନଙ୍କ ବଂଶଧରମାନେ ବି ପ୍ରାୟ ଏକା ପ୍ରକାରର ହେଉଛନ୍ତି ଓ ଜାରି ରହିଲା ପରି ବିଶେଷ କିଛି ପରିବର୍ତ୍ତନ ଦେଖାଉ ନାହାନ୍ତି । ଗତ ୪୦ ହଜାର ବର୍ଷ ଭିତରେ ପରିବେଶ ବେଶ୍ ବଦଳିଛି । ବିଶେଷ କରି, ପ୍ରତି ୨୦ ହଜାର ବର୍ଷରେ ବରଫଯୁଗ ଆସିବାର ଉଦାହରଣ ବି ରହିଛି । କିନ୍ତୁ ଏ ସବୁ ସତ୍ତ୍ୱେ ଆଧୁନିକ ମଣିଷ ଅବଦଳା ରୀତିରେ ପରିବେଶ ସହ ଖାପ ଖୁଆଇ ଚାଲିଛି ।

ହୋମୋ ସାପିଏନ୍‌ସ୍ ସୃଷ୍ଟି ହେବା ପଛରେ ତିନୋଟି ମୁଖ୍ୟ ଘଟଣା କାମ କରିଥିଲା : ୧. ବିବର୍ତ୍ତନ, ୨. ମିଳନ ଓ ୩. ପ୍ରକୃତିର ପ୍ରଭାବ । କିନ୍ତୁ ଆଜିର ମଣିଷ ଏସବୁ ଉପରେ ଅନେକ ପରିମାଣରେ ନିଜର ନିୟନ୍ତ୍ରଣ ରଖିପାରିଛି । ଡାକ୍ତରୀ ବିଦ୍ୟାର ବିକାଶ ସହିତ ଆଜି ଅନେକ ଦେଶରେ ଲୋକଙ୍କୁ ନିଶ୍ଚିତ ମୃତ୍ୟୁ ମୁଖରୁ ବଞ୍ଚାଯାଇପାରୁଛି । ମଣିଷର ଆୟୁଷ ବଢ଼ିପାରିଛି । ପିଲାଙ୍କ ମୃତ୍ୟୁହାର କମିପାରିଛି । ଜିନ୍‌ରେ ଅସୁବିଧା ଥିବା ଅନେକ ଲୋକ, ଯେଉଁମାନେ କି ସୁସ୍ଥ ସନ୍ତାନ ଜାତ କରିବା ପାଇଁ ଅକ୍ଷମ, ସେମାନେ ଚିକିତ୍ସା ଦ୍ୱାରା ସୁସ୍ଥ ଛୁଆ ଜନ୍ମ କରିପାରୁଛନ୍ତି ଓ ପରିବାର ଗଢ଼ି ପାରୁଛନ୍ତି । ଏମାନେ ଭବିଷ୍ୟତରେ ବି କୌଣସି ବିପଦ ସୃଷ୍ଟି କରିବାର ସମ୍ଭାବନା ପ୍ରାୟ ନାହିଁ । ଆଜି ଚିକିତ୍ସା ବିଜ୍ଞାନ ଏହି ଅସୁବିଧାକୁ ସୁଧାରିବା ପାଇଁ ସକ୍ଷମ ହୋଇଛି ।

ଆମ ମସ୍ତିଷ୍କର ବିକାଶ ଆମକୁ ଏ ଯାଏଁ ପ୍ରକୃତି ସହ ଖାପ ଖୁଆଇ ଚଳିବାରେ ଅଧିକ ସାହାଯ୍ୟ କରିଛି । ନିଆଣ୍ଡେରଥାଲ୍ ମଣିଷ ତୁଳନାରେ ଆଜିର ମଣିଷର ମସ୍ତିଷ୍କର ଆକାର ବିଶେଷ ବଦଳିନାହିଁ । ମଣିଷର ମସ୍ତିଷ୍କର ଆକାର ଆଉ ବଢ଼ିବ କି ? ଏହା ଆକାରରେ ବଢ଼ିବାରେ ମଣିଷର ଶରୀରରେ ବିଶେଷ ଅସୁବିଧା ହେବ ନାହିଁ । କିନ୍ତୁ ଗବେଷଣାରୁ ଜଣାଯାଉଛି ଯେ, ମଣିଷର ମସ୍ତିଷ୍କ ଆକାରରେ ତା'ର ସର୍ବୋଚ୍ଚ ସୀମାରେ ପହଞ୍ଚି ସାରିଛି । ଏହାଠୁ ଆକାର ବଢ଼ିଲେ ଖପୁରୀର ଆକାର ବି ତଦନୁସାରେ ବଢ଼ିଯିବ । ଏହା ଛୁଆ ଜନ୍ମ ହେବାରେ ଅସୁବିଧା ସୃଷ୍ଟି କରିବ । ଏହାକୁ ସମ୍ଭାଳିବା ପାଇଁ ମା'ର




ତଳିପେଟର ହାଡର ଆକାର ବଦଳିବାକୁ ହେବ ବା ଛୁଆଟିକୁ ୯ ମାସର ବେଶ୍ ଆଗରୁ ଜନ୍ମ ହେବାକୁ ପଡ଼ିବ, ଯେପରି ଜନ୍ମ ପରେ ଗର୍ଭାଶୟ ବାହାରେ ତା' ଖପୁରୀର ଆକାର ବଢ଼ିପାରିବ । କିନ୍ତୁ ଏହି ବିକଳ୍ପ ବଦଳଗୁଡ଼ିକ ସମ୍ଭବପର ନୁହେଁ । ଏହାଛଡ଼ା ମସ୍ତିଷ୍କର ଆକାର ବଢ଼ିବା ଦ୍ୱାରା ବିଶେଷ କିଛି ଲାଭ ବି ହେବ ନାହିଁ ।

ଦ୍ୱିତୀୟ ପ୍ରଶ୍ନ ହେଉଛି ପ୍ରକୃତିର ବିଲୟ ପ୍ରଭାବରୁ ଆମେ ପୂରାପୂରି ମୁକ୍ତ କି ? ଗରିବ ଦେଶଗୁଡ଼ିକୁ ଦେଖିଲେ ଜଣାଯାଏ ଯେ, ସେଠାରେ ଏବେ ବି ଅନେକ ଲୋକ ସାଧାରଣ ରୋଗରେ ପଡି ମରୁଛନ୍ତି । ଆମେରିକା, ଋଷ ଆଦି ବିକଶିତ ଦେଶଗୁଡ଼ିକରୁ ମାଲେରିଆ, ଫାଇଲେରିଆ, ବସନ୍ତ, ହଇଜା, କାମଳ ଆଦି ରୋଗ ସମୂଳେ ହଟାଇ ଦିଆ ଯାଇ ପାରିଛି । କିନ୍ତୁ ଭାରତ ପରି ଗରିବ ଦେଶରେ ଏବେ ବି ଅନେକ ଲୋକ ଏସବୁ ରୋଗରେ ପଡି ମରୁଛନ୍ତି । ଏବେ ବି ଭାରତ ଆଦି ରାଷ୍ଟ୍ରରେ ଶିଶୁ ମୃତ୍ୟୁହାର ବେଶ୍ ଅଧିକ । ଏଠାରେ ଭଲ ଡାକ୍ତରୀ ଚିକିତ୍ସାର ଏବେ ବି ଯଥେଷ୍ଟ ସୁବିଧା ନାହିଁ ।

ତେଣୁ ଆମେ କହିପାରିବା ଯେ, ଆମେ ପରିବେଶ ସହ କିପରି ଖାପ ଖୁଆଇ ଚଳୁଛେ ତା' ଉପରେ ଆମର ଭବିଷ୍ୟତ ନିର୍ଭରଶୀଳ ନୁହେଁ, ବରଂ ଆମ ଜାତିର ଅନ୍ୟ ସାଥି ମଣିଷ ଓ ପୃଥିବୀର ଅନ୍ୟ ପଶୁପକ୍ଷୀଙ୍କ ସହ କିପରି ମେଳ ରଖି ଚଳୁଛେ, ତା' ଉପରେ ଆମର ଭବିଷ୍ୟତ ଅନେକାଂଶରେ ନିର୍ଭର କରୁଛି ।



# ଆମ ଘର ଏଇ ପୃଥିବୀ

ଆମ ଘର ଏଇ ପୃଥିବୀ।
ତା' କୋଳେ ଆମେ ବଢୁଛେ,
ଜନମ ବେଳାଠୁଁ ମରିଯିବା ଯାଏଁ
ହସି ଖେଳି କାଳ କାଟୁଛେ ।
ଆମ ଘର ଏଇ ପୃଥିବୀ............................(୦)
ସୂରୁଜର ଘରେ ସୁନ୍ଦର ସେତ
ରଙ୍ଗୀନ୍ ତା'ର ରୂପ,
ନୁହେଁ ଅତି ଥଣ୍ଡା ନା ଅତି ଗରମ
ପ୍ରକୃତି ତା' ଅପରୂପ ।
ମାଟି, ପାଣି ଆଉ ପବନର କୋଳେ
ସୁନ୍ଦର ପରିବେଶ ,
ଗଛକୁ ବଢ଼ାଏ ଜୀବକୁ ଚଲାଏ
ଜୀବନ କରିଛି ଚାଷ ।
ଆମ ଘର ଏଇ ପୃଥିବୀ.................. (୧)
ଆମେ ତା'ର ପ୍ରିୟ ସନ୍ତାନ
କେହି ନୁହେଁ ତା'ର ପର,
ଦାନା କନା ପାଣି ଘର ବି ଯୋଗାଏ
କରେ ସେ କେତେ ଆଦର ।
ତା'ରି କୋଳରେ ଛଅଶହ କୋଟି
ଆମେରେ ଭଉଣୀ ଭାଇ,
କେତେ ରଙ୍ଗ ଭାଷା, ବେଶ ଭୂଷା ଆମ
ଫରକରେ ସୀମା ନାହିଁ ।
(ଆମେ) ଯିଏ ବି ସେ ହେଉ ଯାହା ବି ସେ କରୁ
ଯେଉଁଠି ଅବା ସେ ରହୁ,
ଆମ ଘର ଏଇ ପୃଥିବୀଟା ବୋଲି
ସଭିଏଁ ତ କହିଥାଉ ।
ଆମ ଘର ଏଇ ପୃଥିବୀ.......................

